ଛାତ୍ରସାଥୀ ର ବିଶ୍ୱ ବିଚିତ୍ରା



# ବୈଜ୍ଞାନିକ ରୋନାଲ୍ଡ ରସ୍

# ଛାତ୍ରସାଥୀ : ବିଶ୍ୱବିଚିତ୍ରା (୩୯)

ଓ

# ରୋନାଲ୍ଡ ରସ୍

୨୨ଶ ବର୍ଷ ୩ୟ ସଂଖ୍ୟା

୧୯୮୪

●

ସଂପାଦକ :

ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି

●

ପରିଚାଳନା ସଂପାଦକ :

ଶ୍ରୀ ନବକିଶୋର ମହାପାତ୍ର

●

ପ୍ରକାଶକ ଓ ମୁଦ୍ରକ :

କେ. ମହାପାତ୍ର ଏଣ୍ଡ କୋ.ଙ୍କ
ତରଫରୁ
ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା
ଗ୍ରାମପଞ୍ଚାୟତ ପ୍ରେସ
କଟକ-୨ ରେ ମୁଦ୍ରିତ

●

ମୂଲ୍ୟ ଟ ୬-୦୦

## ସୂଚୀପତ୍ର

ଆଜି ଆପଣଙ୍କ ଘରେ
ଆନନ୍ଦ ନାହିଁ କାହିଁକି ?



ଆପଣଙ୍କ ଘରକୁ
ବୋଧହୁଏ

(ମାସିକ ଶିଶୁ ପତ୍ରିକା)

ଆସୁ ନାହିଁ ।!

•

ନିଜ ପିଲାଙ୍କ ମନୋରଞ୍ଜନ ତଥା
ଜ୍ଞାନ ବୃଦ୍ଧି ପାଇଁ
ପ୍ରତିମାସରେ



(ମାସିକ ଶିଶୁ ପତ୍ରିକା)

କିଣନ୍ତୁ !

ପ୍ରତି ଖଣ୍ଡର ମୂଲ୍ୟ ଟ୨-୦୦
ପ୍ରାପ୍ତିସ୍ଥାନ
ଜେ. ମହାପାତ୍ର ଏଣ୍ଡ କୋ:
କଟକ - ୨

# ରୋନାଲ୍ଡ ରସ୍

ତୁମେମାନେ ସମସ୍ତେ ମ୍ୟାଲେରିଆ ଜ୍ୱରର ନାମ ଶୁଣିଥିବ ଓ କେହି କେହି ମଧ୍ୟ ଏହି ଜ୍ୱରରେ ଆକ୍ରାନ୍ତ ହୋଇଥିବା ଅସମ୍ଭବ ନୁହେଁ । ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ମ୍ୟାଲେରିଆ ଲୋକଙ୍କର ଏକ ବଡ଼ ଶତ୍ରୁ । ଆମ ଦେଶ ଏଇ ଭାରତବର୍ଷରେ ପ୍ରତ୍ୟେକ ବର୍ଷ ଲକ୍ଷ ଲକ୍ଷ ଲୋକ ମ୍ୟାଲେରିଆ ରୋଗର କବଳରେ ପଡ଼ି ପ୍ରାଣ ହରାନ୍ତି । ଅତି ପୁରାକାଳରୁ ଏହି ରୋଗର ଉତ୍ପତ୍ତି ହୋଇଛି । ଗ୍ରୀସ ଓ ରୋମ ପ୍ରଭୃତି ଦେଶର ଲୋକମାନେ ବହୁବର୍ଷ ତଳେ ମଧ୍ୟ ଏହି ସର୍ବଗ୍ରାସୀ ମ୍ୟାଲେରିଆ ଜ୍ୱରରେ ପୀଡ଼ିତହୋଇ ପ୍ରାଣ ହରାଉଥିଲେ । ଦକ୍ଷିଣ ଆଫ୍ରିକାର ଗୋଟିଏ ସ୍ଥାନରେ ଶ୍ୱେତାଙ୍ଗ ବ୍ୟକ୍ତିମାନେ ଜ୍ୱରରେ ପୀଡ଼ିତହୋଇ ବହୁ ସଂଖ୍ୟାରେ ମରିଯିବାରୁ ସେହି ସ୍ଥାନର ନାମକରଣ ହୁଏ—"ଶ୍ୱେତାଙ୍ଗ ମାନଙ୍କର କବର" ଖ୍ରୀ ୧୮୮୧ରେ ଆମେରିକାରେ ପାନାମ କେନାଲ ଖୋଳାଇବା କାର୍ଯ୍ୟ ଆରମ୍ଭ ହୁଏ ; କିନ୍ତୁ କେନାଲ ଖୋଳୁଥିବା ଶ୍ରମିକମାନଙ୍କ ମଧ୍ୟରୁ ଅନେକଲୋକ ଏହି ଜ୍ୱରରେ ପ୍ରାଣତ୍ୟାଗ କରନ୍ତି । ଫଳରେ କେନାଲ ଖୋଳା କାର୍ଯ୍ୟ ବନ୍ଦରହେ । ଇଟାଲିର କେତେକାଂଶ ସୁଏଜ କେନାଲ ନିକଟବର୍ତ୍ତୀ ଅଞ୍ଚଳ, ମାଳୟ ଓ ସିଙ୍ଗାପୁରରେ ମ୍ୟାଲେରିଆର ପ୍ରାଦୁର୍ଭାବ ଥିଲା । ବିଲାତରେ ଊନବିଂଶ ଶତାବ୍ଦୀରେ ବହୁତଲୋକ କମ୍ପଜ୍ୱରରେ (ମ୍ୟାଲେରିଆ) ପ୍ରାଣ ହରାଉଥିଲେ ।

ମ୍ୟାଲେରିଆ ଜ୍ୱର ବୃଦ୍ଧି ସହିତ ମଶାମାନଙ୍କର କିଛି ସଂବଧ ଅଛିବୋଲି ଲୋକମାନେ ଅନେକଦିନରୁ ଜାଣିଥିଲେ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଭାରତର ବିଖ୍ୟାତ ଆୟୁର୍ବେଦ ଚିକିତ୍ସକ ସୁଶ୍ରୁତ ଜାଣିପାରିଥିଲେ ଯେ, ଏକ ପ୍ରକାର ପତଙ୍ଗ କାମୁଡ଼ିବା ହେତୁ ମ୍ୟାଲେରିଆ ଜ୍ୱର ହୋଇଥାଏ ।

ବିଖ୍ୟାତ ଭ୍ରମଣକାରୀ ଡେଭିଡ଼ ଲିଭିଙ୍ଗ୍‌ଷ୍ଟୋନଙ୍କ ମତରେ—ସାଧାରଣତଃ ମଶା ରହୁଥିବା ସ୍ଥାନମାନଙ୍କରେ ଏହି ଜ୍ୱର ହୋଇଥାଏ । ଜଳଭୂମି, ନଦୀ ମୁହାଣ ଓ ହ୍ରଦକୂଳ ପ୍ରଭୃତି ସ୍ଥାନ, ଯେଉଁଠାରେକି ମଶାମାନେ ନିଜର ବଂଶବୃଦ୍ଧି କରିପାରିବେ ପ୍ରାୟ ସେହିଠାରେ ମ୍ୟାଲେରିଆ ଜ୍ୱର ଦେଖାଯାଇଥାଏ । ମାତ୍ର କେଉଁ କେଉଁ କାରଣରୁ ଏହି ରୋଗର ଉତ୍ପତ୍ତି ହୁଏ, ତାହା କେହି ଜାଣିନଥିଲେ ଏବଂ ମଶାମାନଙ୍କୁ ଏଥିପାଇଁ ସମ୍ପୂର୍ଣ୍ଣଭାବେ ଦୋଷୀ କରଯାଉ ନଥିଲା । କେତେକ ଭାବୁଥିଲେ ଯେ, ଜଳଭୂମିର ଦୂଷିତବାୟୁ ଏହି ଜ୍ୱରର କାରଣ, ସେମାନଙ୍କ ମତରେ ଏହା କମ୍ପ ଜ୍ୱର । କାରଣ ମ୍ୟାଲେରିଆରେ ଆକ୍ରାନ୍ତ ହେଉଥିବା ରୋଗୀର ଦେହ ପ୍ରଥମେ ଖୁବ୍ ଥରେ

କମିଯାଏ । କିଛିସମୟ ପରେ ଦେହ ଗରମ ହୋଇଯାଏ ଓ ଜ୍ୱରଥିବା ଜଣାଯାଏ । ତିନେ ଚାରିଦିନପରେ ବହୁତ ଝାଳ ବୋହି ଜ୍ୱର ଛାଡ଼ିଯାଏ, କିନ୍ତୁ ରୋଗୀ ସମ୍ପୂର୍ଣ୍ଣଭାବେ ରୋଗରୁ ଭଲହୁଏ ନାହିଁ, ପୁଣି କିଛିଦିନ ପରେ ଜ୍ୱର ହୁଏ । ରୋଗୀ ଶେଷରେ ରୋଗରୁ ଭଲହୁଏ କିମ୍ବା ମୃତ୍ୟୁ ମୁଖରେ ପଡ଼େ ।

କୁଇନାଇନ୍ ତିନିଶହ ବର୍ଷହେଲା ଆବିଷ୍କାର ହେଲାଣି । ସିନ୍‌କୋନା ଗଛର ଛେଲିରୁ ଏହା ପ୍ରସ୍ତୁତ ହୁଏ । କୁଇନାଇନ ଖାଇଲେ ମ୍ୟାଲେରିଆ ଭଲହୁଏ ବୋଲି ଅନେକଲୋକ ଜାଣିଥିଲେ । ତଥାପି ଏହି ରୋଗର ଉତ୍ପତ୍ତି ରହସ୍ୟାଚ୍ଛନ୍ନ ଥିଲା । କୌଣସି ରୋଗ କିପରି ଆରମ୍ଭ ହୁଏ ନ ଜାଣିଲେ, ତାହା ନିବାରଣ କରିବା ଅସମ୍ଭବ, ତେଣୁ ମ୍ୟାଲେରିୟା କବଳରୁ ଲୋକମାନେ ରକ୍ଷା ପାଇପାରି ନ ଥିଲେ ।

ବର୍ତ୍ତମାନ ଆଉ ମ୍ୟାଲେରିଆର ଉତ୍ପତ୍ତି ରହସ୍ୟାବୃତ ନୁହେଁ । ପ୍ରଗାଢ଼ ପରିଶ୍ରମ ଫଳରେ ରୋନାଲଡ୍ ରସ୍ ନାମକ ଜଣେ ଡାକ୍ତର ଏହିରୋଗ ଉତ୍ପତ୍ତିର କାରଣ ଜାଣି ପାରିଥିଲେ । ମ୍ୟାଲେରିଆ ଅଧ୍ୟୁଷିତ ସ୍ଥାନମାନ ଆଜି ଜନସମାକୀର୍ଣ୍ଣ । ରୋନାଲଡ୍ ରସ୍‌ଙ୍କ ଆବିଷ୍କାର ହେତୁ ଏହିରୋଗ ଆଜି ପୃଥିବୀରୁ ଲୋପ ପାଇବାକୁ ଯାଉଛି ।

**ଜନ୍ମ ଓ ବାଲ୍ୟ ଜୀବନ**

ରୋନାଲଡ୍ ରସ୍ ଉତ୍ତର ପ୍ରଦେଶର ଆଲମୋରାଠାରେ ୧୮୫୭ ଖ୍ରୀଷ୍ଟାବ୍ଦ ମେ ମାସ ୧୩ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ସାର କ୍ୟାମ୍ପବେଲ ରସ ଭାରତୀୟ ସୈନ୍ୟ ବାହିନୀରେ କ୍ୟାପଟେନ ଥିଲେ । ରସ ଜନ୍ମହେବାର ତିନିଦିନ ପୂର୍ବରୁ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥାଏ । ଏଇ ସମୟରେ ଆଲମୋରାଠାରେ ଦଳେ ଗୁର୍ଖା ସୈନ୍ୟ ଥିଲେ । ସେମାନେ କ୍ୟାମ୍ପବେଲଙ୍କୁ ଖୁବ୍ ଭଲ ପାଉଥାନ୍ତି । ସେଇ ସୈନ୍ୟମାନେ ତାଙ୍କର ପରିବାରକୁ ପିଣ୍ଡାରି ସୈନ୍ୟମାନଙ୍କ ଆକ୍ରମଣରୁ ରକ୍ଷା କରିଥିଲେ । ରୋନାଲଡ ରସ ତାଙ୍କ ପିତା ମାତାଙ୍କର ପ୍ରଥମ ସନ୍ତାନ ।

ରୋନାଲଡଙ୍କର ବାଲ୍ୟକାଳ ଭାରତ ବର୍ଷରେ କଟିଥିଲା । ସେ ପିଲାଦିନେ ତାଙ୍କ ପିତାମାତାଙ୍କ ସହିତ ବିଭିନ୍ନ ସ୍ଥାନ ଭ୍ରମଣ କରିଥିଲେ । ବାଲ୍ୟକାଳରେ କେତେକ ମଧୁର ସ୍ମୃତି ତାଙ୍କ ମନରେ ଅଙ୍କିତ ହୋଇ ରହିଥିଲା ସୂର୍ଯ୍ୟାସ୍ତର ମନୋହର ଦୃଶ୍ୟ ଓ ତୁଷାରଚ୍ଛନ୍ନ ଗିରିଶୃଙ୍ଗ ଦେଖି ସେ ବିମୋହିତହୋଇ ପଡୁଥିଲେ । ଗୋଟିଏ ବଳଦ ଗାଡ଼ିରେ ତାଙ୍କ ମାତା ଓ ଦୁଇଟି ଛୋଟ ଭାଇଭଉଣୀଙ୍କ ସହିତ ବସି ସୈନ୍ୟଦଳଙ୍କ ପଛରେ ଯାତ୍ରାକରିବା କଥା ମଧ୍ୟ ତାଙ୍କର ମନେପଡୁଥିଲା । ସେ ଆଗ୍ରାର ଦୁର୍ଗ ଓ ପୃଥିବୀ ପ୍ରସିଦ୍ଧ ତାଜମହଲ ଦେଖିଥିଲେ । କାଶୀର ମନ୍ଦିରମାନଙ୍କର ଚୂଡ଼ା ଓ ଗଙ୍ଗାନଦୀରେ

ଭସୁଥିବା ବଡ ବଡ ନୌକାମାନ ଦେଖିବା ତାଙ୍କର ମନେଥିଲା । ଏହି ଧରଣର ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଦୃଶ୍ୟ ଦେଖି ସେ ସମ୍ପୂର୍ଣ୍ଣଭାବରେ ବିମୋହିତ ହୋଇ ପଡୁଥିଲେ । ତାଙ୍କର ମନ ଏହି ପୃଥିବୀର ଅପୂର୍ବ ଶୋଭରାଜିରେ ଲାଗି ରହୁଥିଲା । ଏ ସବୁ ଦୃଶ୍ୟ ରାଜିରେ ସେ ଏତେବି ବିମୋହିତ ହୋଇପଡୁଥିଲେ ଯେ, ସେ ନିଜକୁ ଭୁଲିବା ସଙ୍ଗେ ସଙ୍ଗେ ନିଜର ପରିବାରକୁ ମଧ୍ୟ ଭୁଲି ଯାଉଥିଲେ ।

ପିଲାଦିନରେ ରୋନାଲଡ୍ ରସ୍ ଓ ତାଙ୍କ ଛୋଟ ଭାଇ ଭଉଣୀମାନଙ୍କର ପାଳନର ଦାୟିତ୍ୱ ଭାରତୀୟ ଚାକରମାନଙ୍କ ହସ୍ତରେ ନ୍ୟସ୍ତ ଥାଏ । ସେମାନେ ଏମାନଙ୍କ ସହିତ ଅଧିକାଂଶ ସମୟ ଜଟାନ୍ତ ଏବଂ ହିନ୍ଦୁସ୍ଥାନରେ କଥାବାର୍ତ୍ତା ହୁଅନ୍ତି । ଯେଉଁଦିନ ସେ ପ୍ରଥମେ ଜାଣିପାରିଲେ ଯେ, ଭାରତୀୟମାନଙ୍କ ସହିତ ସେମାନେ ଗୋଟିଏ ଭାଷାରେ କଥା ହୁଅନ୍ତି ଏବଂ ଅନ୍ୟଗୋଟିଏ ଭାଷାରେ ପିତାମାତାଙ୍କ ସହିତ କଥାବାର୍ତ୍ତା କରିଥାନ୍ତି, ସେଦିନ ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେ ତାଙ୍କର ମା'ଙ୍କୁ ଖୁବ୍ ଭଲ ପାଉଥିଲେ । ତାଙ୍କଠାରୁ ପ୍ରଥମେ ଲେଖାପଢା ଶିଖିବାକୁ ଆରମ୍ଭ କରିଥିଲେ ମଧ୍ୟ ପିଲାମାନଙ୍କ ସହିତ ମିଶି ଖେଳାବୁଲା କରିଥାନ୍ତି ଓ ଅବସର ସମୟରେ ଚିତ୍ରାଙ୍କନ କରନ୍ତି ।

ରୋନାଲଡଙ୍କର ପଢିବା ବୟସ ହୋଇଗଲା । ସେ ବିଲାତରେ ପଢିବାପାଇଁ ତାଙ୍କ ବାପା ସ୍ଥିରକଲେ । ସେହି ସମୟରେ ଗୋଟିଏ ଦ୍ରୁତଗାମୀ ଜାହାଜରେ ଆଠବର୍ଷ ବୟସରେ ରୋନାଲଡ୍ ବିଲାତ ଯାତ୍ରାକଲେ । ସେତେବେଳେ ବିଲାତ ଯିବାକୁ ପ୍ରାୟ ପାଞ୍ଚମାସ ସମୟ ଲାଗୁଥିଲା । ଏହି ସମୁଦ୍ର ଯାତ୍ରା ବାଳକ ରସଙ୍କ ପକ୍ଷରେ ଅତ୍ୟନ୍ତ ଆମୋଦପ୍ରଦ ଥିଲା । ଦୀର୍ଘ ଜଳଯାତ୍ରାପରେ ରସ ବିଲାତରେ ପହଞ୍ଚି ମାମୁଁଙ୍କ ଗୃହରେ ବାସ କରିବାକୁ ଲାଗିଲେ ।

ବିଲାତରେ ପହଞ୍ଚି ତାଙ୍କର ମନ ପାଠପଢା ପ୍ରତି ଆକୃଷ୍ଟ ହେଲା । ତାଙ୍କ ମାମୁଁଙ୍କର ଅନେକ ବହି ଥିଲା । ରୋନାଲଡ ସେଥିମଧ୍ୟରୁ ସୁନ୍ଦର ଏବଂ ଉପାଦେୟ ପୁସ୍ତକମାନ ପଢିବାକୁ ଆରମ୍ଭକଲେ । ସେ ଏହି ସମୟରେ 'ରବିନସନ କ୍ରୁସୋ' ଓ ପୋପ୍‌ଙ୍କଦ୍ୱାରା ଅନୁଦିତ ପୁସ୍ତକମାନ ପଢିଥିଲେ । ବିଖ୍ୟାତ ନାଟ୍ୟକାର ସେକ୍‌ସପିଅରଙ୍କ (କିଙ୍ଗ୍‌ଲିଅର୍) ପ୍ରଭୃତି ନାଟକ ଓ ଅନ୍ୟାନ୍ୟ ପ୍ରସିଦ୍ଧ ନାଟ୍ୟକାରମାନଙ୍କର ରଚନାବଳୀ ପଢ଼ି ସେ ପ୍ରାୟ ଜ୍ଞାନବୃଦ୍ଧି କରିଥିଲେ । ବନ୍ଧୁମାନଙ୍କ ସହିତ ମିଶି ବିଭିନ୍ନସ୍ଥାନ ଭ୍ରମଣ କରୁଥିଲେ ଏହାବ୍ୟତୀତ ନୌକା ଚଳାଇବା, ମାଛମାରିବା ଓ ପହଁରା ଶିଖିବାରେ ଦିନର ଅଧିକାଂଶ ସମୟ ଯାଉଥିଲା ।

ଚାରବର୍ଷ ବୟସରେ ସାଉଥ ହାଂପଟନ ନିକଟରେ ଅବସ୍ଥିତ ଗୋଟିଏ ସ୍କୁଲରେ ରସ ନାମ ଲେଖାଇଲେ । ସ୍କୁଲର ପାଠପଢା ତାଙ୍କୁ ଭଲଲାଗୁ ନ ଥିଲା । ମାତ୍ର ସେ

ଅଙ୍କକରିବାକୁ ଭଲପାଆନ୍ତି । ନକ୍ସା ଓ ବିଭିନ୍ନ ଚିତ୍ର ଅଙ୍କନ କରନ୍ତି । ଅବସର ସମୟରେ ସ୍କୁଲ ବଗିଚାରେ ଖେଳାବୁଲାକରି ସମୟ କଟାଇଦିଅନ୍ତି । ବିଭିନ୍ନ ଜୀବ ଦେଖିବାକୁ ତାଙ୍କର ବିଶେଷ ଆଗ୍ରହ ରହିଥିଲା ସେ ଝିଟିପିଟି ବେଙ୍ଗ ଓ ସାପ ମଧ୍ୟ ପୋଷୁଥିଲେ । ପଶୁମାନଙ୍କ ସମ୍ବନ୍ଧରେ ସେ ଏକ ବିବରଣାତ୍ମକ ପୁସ୍ତକ ଲେଖିବାକୁ ଆରମ୍ଭ କରିଥିଲେ । ସେ ପିଆନୋ ବଜାଉଥିଲେ । ରସ ଥିଲେ ଏକ ଫୁଟବଲ୍ ଆଉ କ୍ରିକେଟ ଖେଳାଳି । ତାଙ୍କର ସ୍କୁଲ ଜୀବନଟା ଖୁବ୍ ଆନନ୍ଦରେ କଟିଛି । ଅନ୍ୟାନ୍ୟ ସାଧାରଣ ବାଳକମାନଙ୍କ-ପରି ଖେଳାବୁଲା ଓ ପଢ଼ାପଢ଼ିରେ ସେ ସମୟ କଟେଇ ଦେଉଥିଲେ ।

ଆଗରୁ ତୁମ୍ଭମାନଙ୍କୁ କୁହାଯାଇଛି ଯେ, ରୋନାଲଡ ଚିତ୍ରାଙ୍କନ କରିବାକୁ ଭଲ ପାଉଥିଲେ । ଏହାପରେ କ୍ରମେ ସେ ଚିତ୍ରବିଦ୍ୟାପ୍ରତି ଖୁବ୍ ଆକୃଷ୍ଟ ହୋଇପଡ଼ଲେ ଏବଂ ନିଜକୁ ଜଣେ ଚିତ୍ରକର ଭାବରେ ଗଢ଼ିବାପାଇଁ ମଧ୍ୟ ସ୍ଥିରକଲେ । ସେ ଜାଣିଥିଲେ ଯେ, ଚିତ୍ରକର ହେବାପାଇଁ ଅନେକ ବାଧାବିଘ୍ନ ଉପୁଜିପାରେ । ତେଣୁ ଚିତ୍ରକର ହୋଇ ନ ପାରିଲେ ସୈନିକ କିମ୍ବା ନାବିକ ହେବାପାଇଁ ତାଙ୍କର ଇଚ୍ଛାଥାଏ । ଏହାର କାରଣ ହେଉଛି ବିଲାତର କୁହୁଡ଼ିଆପାଗକୁ ସେ ଆଦୌ ଭଲ ପାଉ ନଥିଲେ । ଭାରତରେ ତାଙ୍କର ଜନ୍ମ । ପିଲାଦିନୁ ସେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ବଢ଼ି ଆସିଥିଲେ । ବିଲାତ ଆସିବା ଦିନଠାରୁ ସେପରି ପାଗ କେବେହେଲେ ସେ ଦେଖିପାରିଲେ ନାହିଁ । ଭାବିଲେ, ସୈନିକ କିମ୍ବା ନାବିକ ହେଲେ ବିଲାତଠାରୁ ଦୂରରେ ରହିବେ । କେତେ ନୂତନସ୍ଥାନ ଭ୍ରମଣ କରିବାକୁ ସୁଯୋଗ ମିଳିଯିବ । ମାତ୍ର ତାଙ୍କର ଆଶା ନିରାଶାରେ ପରିଣତ ହେଲା । ସାର କ୍ୟାମବେଲ ଏହାର ତୀବ୍ର ବିରୋଧ କଲେ । ସେ ଇଚ୍ଛା କରୁଥିଲେ ଯେ, ରୋନାଲଡ ଜଣେ ଡାକ୍ତର ହେବେ । ପିତାଙ୍କର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟକରିବାପାଇଁ ରୋନାଲଡଙ୍କର ସାହସ ନଥିଲା । ଅବଶେଷରେ ଡାକ୍ତରୀ ପଢ଼ିବାପାଇଁ ରାଜିହୋଇଗଲେ ।

ବିଲାତରେ ସେଣ୍ଟ ବ୍ରାର୍ଥୋଲୋମିଉ (St. Bratholomew's) ଡାକ୍ତରଖାନାରେ ରୋନାଲଡ ଜଣେ ଛାତ୍ର ଭାବରେ ପ୍ରବେଶ କଲେ । କିନ୍ତୁ ଚିକିତ୍ସା ବିଦ୍ୟାପ୍ରତି ତାଙ୍କର ଆଗ୍ରହ ନଥାଏ । କବିତା ରଚନା କରିବାରେ ସେ ଅଧିକାଂଶ ସମୟ କଟାଇଦିଅନ୍ତି । ଏହି ସମୟରେ ରସ ଜଣେ ଯୁବକ ଡାକ୍ତରଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ସେହି ଯୁବ ଡାକ୍ତର ଲିଷ୍ଟରଙ୍କ ନୂତନ ପଦ୍ଧତି ଅନୁଯାୟୀ ଯନ୍ତ୍ରପାତି ସବୁ ବିଶୋଧନକରି ଅସ୍ତ୍ରୋପଚାର କରୁଥିଲେ । ଲିଷ୍ଟରଙ୍କର ଏହି ଆବିଷ୍କାର ପୂର୍ବରୁ ଡାକ୍ତରମାନେ ଯନ୍ତ୍ରପାତି ବିଶୋଧନ ନକରି ଅସ୍ତ୍ରୋପଚାର କରିବା ଫଳରେ କ୍ଷତସ୍ଥାନ ପଚିଯାଇ ବହୁତ ରୋଗୀ ପ୍ରାଣ ହରାଉଥିଲେ । କିନ୍ତୁ ଲିଷ୍ଟରଙ୍କ ନୂତନ ପ୍ରଣାଳୀରେ ଯନ୍ତ୍ରପାତି ବିଶୋଧନ କରାଗଲା ଏବଂ କମ୍ ରୋଗୀ ମୃତ୍ୟୁବରଣ କଲେ । ରୋନାଲଡ ଏହି ପାର୍ଥକ୍ୟ ବୁଝିପାରି ସେଥିପ୍ରତି ଆକୃଷ୍ଟ ହୋଇପଡ଼ଲେ ।

ରସଙ୍କର ଚିକିତ୍ସା ବିଦ୍ୟାପ୍ରତି ପ୍ରଥମରୁ ଆଗ୍ରହ ନ ଥିଲା । ସେ ଅନ୍ୟାନ୍ୟ ବିଷୟରେ ଆଗ୍ରହୀ ହୋଇପଡ଼ିବାରୁ ନିଜର ପାଠ୍ୟପ୍ରତି ଅବହେଳା କରିଥିଲେ । ଫଳରେ ପରୀକ୍ଷାପାଇଁ ଭଲଭାବରେ ପ୍ରସ୍ତୁତହୋଇ ପାରିଲେନାହିଁ । ଭାରତୀୟ ମେଡ଼ିକାଲ ସର୍ଭିସ୍-ପାଇଁ ହେଉଥିବା ପ୍ରତିଯୋଗିତାମୂଳକ ପରୀକ୍ଷାରେ ସେ ଅକୃତକାର୍ଯ୍ୟ ହେଲେ । ସେତେବେଳକୁ ତାଙ୍କର ବାପା ଚାକିରିରୁ ଅବସର ଗ୍ରହଣ କରିଥିଲେ । ରସ ବର୍ତ୍ତମାନ ସ୍ୱାବଲମ୍ବୀ ହେବାକୁ ସଙ୍କଳ୍ପକଲେ । ଦୈବାତ୍ ଗୋଟିଏ ଜାହାଜରେ ଡାକ୍ତର ଚାକିରି ପାଇଗଲେ । ଏହି ଜାହାଜଟି ବିଲାତ ଓ ଆମେରିକା ମଧ୍ୟରେ ଯିବାଆସିବା କରୁଥିଲା । ସେତେବେଳେ ବିଲାତରୁ ଆମେରିକା ଯିବାକୁ ଦୁଇ ସପ୍ତାହ ପର୍ଯ୍ୟନ୍ତ ସମୟ ଲାଗୁଥିଲା । ପାଗ ଖରାପହେଲେ ଆହୁରି ଅଧିକ ଦୁଇ ଚାରିଦିନ ସମୟ ଅଧିକ ଲାଗିଯାଉଥାଏ । ଗଲାବେଳେ ରସ ଯାତ୍ରୀ ଓ ନାବିକମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ନିଅନ୍ତି । ଫେରନ୍ତା ରାସ୍ତାରେ ଆଉ ବେଶି ଯାତ୍ରୀ ନଥାନ୍ତି । ଛେଳି, ମେଣ୍ଢା ପ୍ରଭୃତିନେଇ ଜାହାଜ ବିଲାତ ପ୍ରତ୍ୟାବର୍ତ୍ତନ କରେ । ତେଣୁ ପଢ଼ିବାପାଇଁ ରସଙ୍କୁ ବହୁତ ସମୟ ମିଳିଲା । ଏହିପରି ଭାବରେ ସେ ଆସନ୍ତା ପରୀକ୍ଷାପାଇଁ ପ୍ରସ୍ତୁତ ହେଲେ ।

ରସ ଭାରତୀୟ ମେଡ଼ିକାଲ ସର୍ଭିସ ପାଇଁ ମନୋନୀତ ହେଲେ ଓ ଖ୍ରୀ. ୧୮୮୧ ରେ ଭାରତକୁ ଆସି ସୈନ୍ୟ ବାହିନୀରେ ଡାକ୍ତର ଭାବେ ଯୋଗଦାନ କଲେ । ତାଙ୍କର ବିଶେଷ କାମ ନ ଥିବାରୁ ସେ ବହୁତ ସମୟ ପାଆନ୍ତି । ଅବସର ସମୟରେ ପଢ଼ାପଢ଼ି କରନ୍ତି । ସେ ଜର୍ମାନ, ଲାଟିନ୍, ଗ୍ରୀକ୍, ଓ ଫରାସୀ ଭାଷା ଶିକ୍ଷା କଲେ ସଙ୍ଗୀତ ପ୍ରତି ତାଙ୍କର ମୋହ ତୁଟି ନଥିଲା ଓ କୌଣସି ସ୍ଥାନକୁ ଗଲେ ପିଆନୋ ନେଇ ଯାଉଥିଲେ । ଶ୍ରେଷ୍ଠ କବିମାନଙ୍କର ପଦ୍ୟାବଳୀ ପଢ଼ୁଥିଲେ । ସମୟରେ ନିଜେ ପଦ୍ୟ ରଚନା ମଧ୍ୟ କରୁଥିଲେ । ସେ ଗାଁ ଗହଳିକୁ ବୁଲିବାକୁ ଯାଆନ୍ତି । ଟେନିସ ଓ ପୋଲୋ ଖେଳି ସମୟ କଟାନ୍ତି । କେତେବେଳେ କେମିତି ଶିକାର କରିବା ପାଇଁ ଜଙ୍ଗଲକୁ ବାହାରି ପଡ଼ନ୍ତି । ଭାରତରେ ସେ ପ୍ରଥମ କେତେ ବର୍ଷ ଏହିପରି ଭାବରେ କଟାଇ ଦେଲେ । ମାତ୍ର କ୍ରମେ ଏହିସବୁ କାର୍ଯ୍ୟ ତାଙ୍କୁ ଭଲ ଲାଗିଲା ନାହିଁ । ସେ ନିଜକୁ ବଡ଼ ଅସହାୟ ବୋଧ କରିଥିଲେ । ଚାକିରି ଛାଡ଼ିଦେବା ପାଇଁ ମଧ୍ୟ ଇଚ୍ଛା କଲେ ।

ରସ ଗାଁ ଗହଳିକୁ ବୁଲିବାକୁ ଯାଉଥିଲେ । ଗାଁ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ତାଙ୍କର ମନ ତରଳି ଯାଉଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ଗରୀବ । ରୋଗ ହେଲେ କେହି ପଚାରିବାକୁ ନାହିଁ । ଏହାସବୁ ଦେଖି ସେ ଦୁଃଖିତ ହେଉଥିଲେ । ଆଗରୁ କୁହାଯାଇଛି ଯେ, ରସ ଡାକ୍ତରୀ ଚାକିରି ଛାଡ଼ିଦେବା ପାଇଁ ଇଚ୍ଛା କରୁଥିଲେ । କିନ୍ତୁ ଭାରତୀୟମାନଙ୍କର ଅସୁବିଧା ଦେଖି ତାଙ୍କର ମତ ଭିନ୍ନ ପଥରେ ପରିଚାଳିତ ହେଲା । ସେ ଭାବିଲେ ଯେ, ଡାକ୍ତର ଭାବେ ତାଙ୍କର କାର୍ଯ୍ୟରେ ସେ ଅବହେଳା କରୁଛନ୍ତି । ରୋଗ

ତାଉତୁ ମଣିଷକୁ ରକ୍ଷା କରିବାକୁ ସେ କିଛି କରିପାରି ନାହାଁନ୍ତି । ତେଣୁ କିଛି ଗୋଟାଏ କରିବା ପାଇଁ ସେ ବ୍ୟାକୁଳ ହୋଇ ପଡ଼ଲେ । ସେ ଦେଖୁଥିଲେ ଭାରତର ଅଧିକାଂଶ ଲୋକ ମ୍ୟାଲେରିଆ ଜ୍ୱରରେ ପୀଡ଼ିତ ହେଉଛନ୍ତି । ଶିଶୁ ବାଳକମାନେ ଏଇ ଜ୍ୱର କବଳରେ ପଡ଼ି ଦୁର୍ବଳ ଓ ରୋଗୀ ହୋଇ ମୃତ୍ୟୁବରଣ କରୁଛନ୍ତି । ସେ ତାଙ୍କର ମନ ସ୍ଥିର କରି ନେଲେ, ମ୍ୟାଲେରିଆ ବିରୁଦ୍ଧରେ ଅସ୍ତ୍ରାଭିଯାନ ବାହାରିଲେ ।

ମ୍ୟାଲେରିଆ ବିଷୟରେ ଗବେଷଣା କରିବା ପୂର୍ବରୁ ସେ କିଛିଦିନ ଛୁଟି ନେଇ ବିଲାତ ଗଲେ । ସେ ବିଲାତରୁ ଖ୍ରୀ· ୧୮୯୦ରେ ଭାରତକୁ ଫେରି ମ୍ୟାଲେରିଆ ସମ୍ବନ୍ଧରେ ଗବେଷଣା ଆରମ୍ଭ କଲେ ।

ରୋନାଲଡ଼ ଏହି ବିଷୟରେ ଗବେଷଣା କରିବା ପୂର୍ବରୁ ମ୍ୟାଲେରିଆ କାହିଁକି ହୁଏ, ତାହା ଜାଣିବା ପାଇଁ ଚେଷ୍ଟା କରି ନଥିଲେ । ଡାକ୍ତରମାନେ କିପରି ଏହି ରୋଗ ଭଲ ହେବ ତା'ର ଚେଷ୍ଟା କରୁଥିଲେ । ସେହି ସମୟରେ ସମସ୍ତଙ୍କର ବିଶ୍ୱାସ ଥିଲା ଯେ, ଦୂଷିତ ବାୟୁ ସଂସ୍ପର୍ଶରେ ଆସିବା ଫଳରେ ଏହି ରୋଗ ହୋଇଥାଏ । ମାତ୍ର ଅନ୍ୟ କେତେକ ଡାକ୍ତର ଓ ବୈଜ୍ଞାନିକ ଏହି ମତରେ ବିଶ୍ୱାସ କରୁ ନ ଥିଲେ । ସେମାନଙ୍କ ମତରେ ଦୂଷିତ ବାୟୁ ମ୍ୟାଲେରିଆର କାରଣ ନୁହେଁ । ଅନ୍ୟ କୌଣସି ଉପାୟରେ ମ୍ୟାଲେରିଆ ଆକ୍ରମଣ କରେ । ଲାଭେରନ୍ ନାମକ ଜଣେ ଫରାସୀ ଡାକ୍ତର ଭାବୁଥିଲେ ଯେ, ମଶା କାମୁଡ଼ିବା ଫଳରେ ମ୍ୟାଲେରିଆ ଜ୍ୱର ହୁଏ । କିନ୍ତୁ ତାଙ୍କର ଏହି ମତବାଦ ଉପରେ କେହି ଆସ୍ଥା ସ୍ଥାପନ କଲେ ନାହିଁ । ଲାଭେରନ୍ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇଥିବା ରୋଗୀର ରକ୍ତରେ ଏକପ୍ରକାର କ୍ଷୁଦ୍ର ଜୀବାଣୁ ଦେଖି ପାରିଥିଲେ । କ୍ଷୁଦ୍ର ଜୀବାଣୁଗୁଡ଼ିକ ମ୍ୟାଲେରିଆ ରୋଗର କାରଣ ବୋଲି ସେ ବିଶ୍ୱାସ କରିଥିଲେ । ରୋନାଲଡ଼ ଏହି ସମ୍ବନ୍ଧରେ ଲାଭେରନଙ୍କ ଦ୍ୱାରା ଲିଖିତ ପୁସ୍ତକଗୁଡ଼ିକ ପାଠ କରିଥିଲେ । ରସ ତାଙ୍କର ଚିକିତ୍ସାରେ ଥିବା ମ୍ୟାଲେରିଆ ଜ୍ୱରାକ୍ରାନ୍ତ ରୋଗୀମାନଙ୍କ ରକ୍ତ ପରୀକ୍ଷା କରି କିଛି ଦେଖି ପାରିଲେ ନାହିଁ ।

ପ୍ୟାଟ୍ରିକ୍ ମାନସନ ନାମକ ଅନ୍ୟ ଜଣେ ଡାକ୍ତର ଲାଭେରନ୍‌ଙ୍କ ମତବାଦରେ ବିଶ୍ୱାସ କରୁଥିଲେ । ପ୍ୟାଟ୍ରିକ୍ ଏଲିଫାଣ୍ଟିଆସିସ ରୋଗ ସମ୍ବନ୍ଧରେ ଗବେଷଣା କରୁଥିଲେ । ଏହି ରୋଗରେ ଆକ୍ରାନ୍ତ ହୋଇଥିବା ରୋଗୀମାନଙ୍କର ଚର୍ମ ହସ୍ତୀମାନଙ୍କର ଚର୍ମ ପରି କଠିନ ଓ ମୋଟା ହୋଇଯାଉଥିଲା । ମାନସନ ଗବେଷଣା କରି ଜାଣି ପାରିଲେ ଯେ, ମଶା ଏହି ରୋଗର ଜୀବାଣୁକୁ ରୋଗୀ ଦେହରୁ ସୁସ୍ଥ ଲୋକର ଦେହକୁ ବହନ କରିଥାଏ । ମଶା କାମୁଡ଼ିବା ହେତୁ ଏହି ରୋଗ ହୁଏ । ପ୍ୟାଟ୍ରିକ୍‌ଙ୍କର ଏହି ମତରେ ଖୁବ୍ କମ ଲୋକ ବିଶ୍ୱାସ କରୁଥିଲେ । ସେ ଭାବୁଥିଲେ ଯେ, ମଶା କାମୁଡ଼ିବା ଫଳରେ ମ୍ୟାଲେରିଆ ଜ୍ୱର ହୁଏ । ତାଙ୍କର ଏହିପରି ଧାରଣା ପଛରେ ଯଥେଷ୍ଟ କାରଣ

ଥିଲା । ମଶା କାମୁଡ଼ିବା ହେତୁ ଏଲିଫାଣ୍ଟିଆସିସ ରୋଗ ହେଉଥିବାରୁ ମ୍ୟାଲେରିଆ ଜ୍ୱର ମଧ୍ୟ ସେହି କାରଣରୁ ହେଉଥିବ ବୋଲି ସେ ଅନୁମାନ କଲେ ।

ଖ୍ରୀ. ୧୮୯୩ରେ ରସ ଛୁଟିନେଇ ବିଲାତ ଗଲେ । ସେଣ୍ଟ ବାର୍ଥୋଲୋମିଉ ଡାକ୍ତରଖାନାର ଜଣେ ଡାକ୍ତରଙ୍କ ସହ ଦେଖାକରି ତାଙ୍କୁ ଫରାସୀ ଡାକ୍ତର ଲାଭେରନଙ୍କ ମତ ସମ୍ବନ୍ଧରେ ସେ କ'ଣ ଭାବୁଛନ୍ତି ବୋଲି ପଚାରିଲେ । ସେହି ଡାକ୍ତର ଲାଭେରନଙ୍କ ମତ ସତ୍ୟ ବୋଲି କହି ରସଙ୍କୁ ଡାକ୍ତର ପ୍ୟାଟ୍ରିକ୍‌ଙ୍କ ସହିତ ଦେଖା କରିବା ନିମନ୍ତେ ପରାମର୍ଶ ଦେଲେ । ରସ ପ୍ୟାଟ୍ରିକ୍‌ଙ୍କ ସହିତ ତାଙ୍କ ବାସଭବନରେ ସାକ୍ଷାତ କଲେ । ରସ ନିଜର ଇଚ୍ଛା ତାଙ୍କ ନିକଟରେ ପ୍ରକାଶ କଲେ । ଉଭୟେ ଅନେକ ସମୟ ପର୍ଯ୍ୟନ୍ତ ମ୍ୟାଲେରିଆ ଉତ୍ପତ୍ତିର କାରଣ ସଂବନ୍ଧରେ ଆଲୋଚନା କରିଥିଲେ । ପ୍ୟାଟ୍ରିକ୍ ମାନସନ୍ ତାଙ୍କୁ ଆଉ ଗୋଟିଏ ବିଷୟରେ ସାହାଯ୍ୟ ଦେଇଥିଲେ । ଗୋଟିଏ ମ୍ୟାଲେରିଆ ରୋଗୀର ରକ୍ତ ନେଇ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କଲେ । ସେମାନେ କେତେ ଗୁଡ଼ିଏ କ୍ଷୁଦ୍ର ଜୀବାଣୁ ଦେଖିବାକୁ ପାଇଲେ । ସୁସ୍ଥ ବ୍ୟକ୍ତିର ରକ୍ତରେ ସେହି ଜୀବାଣୁ ଦେଖିବାକୁ ମିଳେ ନାହିଁ । ବର୍ତ୍ତମାନ ଲାଭେରନଙ୍କ କଥା ପ୍ରମାଣିତ ହେଲା । ମାତ୍ର ରସଙ୍କ ମନରେ ଦୁଇଟି ପ୍ରଶ୍ନର ଉଦୟ ହେଲା । ପ୍ରଥମଟି ହେଉଛି ଏହି କ୍ଷୁଦ୍ର ଜୀବାଣୁ କିପରି ରକ୍ତରେ ପ୍ରବେଶ କରେ । ଦ୍ୱିତୀୟଟି ସେହି ଜୀବାଣୁଗୁଡ଼ିକ କିପରି ରୋଗୀ ଦେହରୁ ସୁସ୍ଥ ଶରୀରକୁ ଯାଇପାରେ । ଏହି ଦୁଇଟି ପ୍ରଶ୍ନର ସମାଧାନ ହୋଇଗଲେ ଅନେକ ଲୋକ ମ୍ୟାଲେରିଆର କବଳରୁ ରକ୍ଷା ପାଇବେ ବୋଲି ତାଙ୍କର ଧାରଣା ହେଲା ।

ଡାକ୍ତର ପ୍ୟାଟ୍ରିକ୍ ମାନସନଙ୍କ ସହିତ ଆଲୋଚନା କରି ରସ ଅନେକ କଥା ଜାଣିପାରିଲେ । ମାନସନ ତାଙ୍କୁ କହିଲେ ଯେ, ମଶାମାନେ ମ୍ୟାଲେରିଆ ଜ୍ୱରର ବାହକ । ରସ ଏହିକଥା ପରୀକ୍ଷା କରିବାପାଇଁ ସ୍ଥିରକଲେ । ଭାରତରେ ପହଞ୍ଚିବାମାତ୍ରେ ତାଙ୍କର ଗବେଷଣା ଆରମ୍ଭ କରିବାର ସଂକଳ୍ପ କରିଥିଲେ ।

ଭାରତକୁ ଫେରିବାପୂର୍ବରୁ ସେ ଗୋଟିଏ ଛୋଟ ଅଣୁବୀକ୍ଷଣ ଯନ୍ତ୍ର ନିର୍ମାଣ କରିଥିଲେ । ଏଇଟିକୁ ସେ ସର୍ବଦା ତାଙ୍କର କାନ୍ଧରେ ଓହଳାଇ ନେଉଥିଲେ । ମ୍ୟାଲେରିଆ ସମ୍ବନ୍ଧରେ କାର୍ଯ୍ୟ ଆରମ୍ଭ କରିବାପାଇଁ ସେ ଅତ୍ୟନ୍ତ ଆଗ୍ରହୀ ହୋଇପଡ଼ିଲେ । ସେ ଏପରି ଉତ୍ସାହିତ ହୋଇପଡ଼ିଲେ ଯେ, ଜାହାଜରେ ତାଙ୍କର ପରୀକ୍ଷା ଆରମ୍ଭ କରି-ଦେଲେ । ଯାତ୍ରୀମାନଙ୍କ ଦେହରୁ ରକ୍ତନେଇ ପରୀକ୍ଷାକଲେ । କିନ୍ତୁ ସେମାନଙ୍କମଧ୍ୟରୁ କେହି ମ୍ୟାଲେରିଆରେ ପୀଡ଼ିତ ନ ଥିଲେ । ଜାହାଜ ମାଲଟାଠାରେ କିଛି ସମୟ ରହିଥିଲା । ସେ ତାଙ୍କର ଅଣୁବୀକ୍ଷଣ ଯନ୍ତ୍ର ନେଇ ଜାହାଜରୁ ଓହ୍ଲାଇଗଲେ । ଡାକ୍ତରଖାନା-

ମାନଙ୍କୁ ଯାଇଁ ସେ ମ୍ୟାଲେରିଆ ରୋଗୀ ଖୋଜି ବୁଲିଲେ । କିନ୍ତି ସମୟ ଡେରି କରିଥିଲେ ସେ ଆଉ ତାହାଙ୍କରେ ଯାଇପାରି ନ ଥାନ୍ତେ ।

ଭାରତରେ ପହଞ୍ଚି ସେ ସିକନ୍ଦରବାଦରେ ତାଙ୍କ କାର୍ଯ୍ୟରେ ଯୋଗଦାନ କଲେ । ସେହିଦିନଠାରୁ ଦୀର୍ଘ ଚାରିବର୍ଷ ପର୍ଯ୍ୟନ୍ତ ସେ ଗବେଷଣାରେ ବ୍ୟସ୍ତ ରହିଲେ । ରସ୍ ଗବେଷଣା କରିବାପାଇଁ ଖୁବ୍ କମ ସମୟ ପାଉଥିଲେ । ତାଙ୍କର ଦୈନନ୍ଦିନ କାର୍ଯ୍ୟପରେ ସେ ଗବେଷଣା କାର୍ଯ୍ୟ କରନ୍ତି । ସେକାଳର ଅନେକ ଅସୁବିଧା ମଧ୍ୟରେ କାର୍ଯ୍ୟ କରୁଥିଲେ । ଭାରତର ଜଳବାୟୁ ତାଙ୍କ ପକ୍ଷରେ ଭଲ ନ ଥିଲା । ସେଥିପାଇଁ ସେ ବେଶୀ ସମୟ କାର୍ଯ୍ୟ କରିପାରୁ ନ ଥିଲେ । ଅଧିକନ୍ତୁ ମଧ୍ୟ ଗବେଷଣା କରିବାପାଇଁ ଉପଯୁକ୍ତ ଯନ୍ତ୍ରପାତିର ଅଭାବ ନ ଥିଲା, ଏହାବ୍ୟତୀତ ଗୋଟିଏ ଛୋଟଘରେ ବହୁତ ସମୟପର୍ଯ୍ୟନ୍ତ ଦେଖିବା ଓ ପରୀକ୍ଷା କରିବା କଠିନ ଥିଲା । ଏ ସବୁ କାର୍ଯ୍ୟପାଇଁ କଠିନ ଅଧ୍ୟବସାୟ ଓ ଧୈର୍ଯ୍ୟ ଆବଶ୍ୟକ । ରସଙ୍କଠାରେ ଏହି ସମସ୍ତ ଗୁଣ ଥିବାରୁ, ସେ କାର୍ଯ୍ୟକରି ପାରୁଥିଲେ । ସାର ପ୍ୟାଟ୍ରିକ, ମାନସନ୍ ମଧ୍ୟ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ସେ ରେଲଙ୍କୁ ସମୟୋପଯୋଗୀ ଉପଦେଶ ଦେଉଥିଲେ ।

ମଶା ଦେହରେ ମ୍ୟାଲେରିଆ ଜୀବାଣୁ ଖୋଜିବା ରସଙ୍କର ପ୍ରଥମ କାର୍ଯ୍ୟ । ଏହା କରିବା ଅର୍ଥ ହେଉଛି, ମଶା ଦେହରୁ ବାହାରିବା ଜୀବାଣୁକୁ ମ୍ୟାଲେରିଆ ରୋଗୀର

ରକ୍ତରୁ ବାହାରୁଥିବା ଜୀବାଣୁ ସହିତ ତୁଳନା କରିବା, ସେ ରୋଗୀମାନଙ୍କ ଦେହରୁ ରକ୍ତନେଇ ପରୀକ୍ଷା କରନ୍ତି । ବିଭିନ୍ନ ରକମର ମଶାମାନଙ୍କୁ ପରୀକ୍ଷା କରନ୍ତି । ବିଭିନ୍ନ ମଶା ଦେହରେ ଭିନ୍ନଧରଣର ଜୀବାଣୁମାନ ରହୁଥିବାରୁ ତାଙ୍କର କାର୍ଯ୍ୟ କଠିନହୋଇ ପଡ଼ୁଥିଲା । ପ୍ରତ୍ୟେକ ମଶାକୁ କାଟି ଅଣୁବୀକ୍ଷଣ ଯନ୍ତ୍ରରେ ପରୀକ୍ଷା କରିଥାନ୍ତି ।

ସମୟ ସମୟରେ ରସ ଦୀର୍ଘସମୟଧରି କାର୍ଯ୍ୟକରନ୍ତି । ସକାଳ ସାତଟାରୁ ସନ୍ଧ୍ୟା ସାତଟା ପର୍ଯ୍ୟନ୍ତ ତାଙ୍କର ଛୋଟ ଗବେଷଣାଗାରରେ କଟାଇ ଦିଅନ୍ତି । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଅବଶ ହୋଇଯାଏ । ଆଖିରୁ ପାଣି ନିଗିଡ଼ିଯାଏ । ତଥାପି ସେ ସେହିପରି ବସିରହି କାର୍ଯ୍ୟ କରିଯାଆନ୍ତି । ମଶା ପାଇବା ନିମିତ୍ତ ତାଙ୍କୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥାଏ । ସେ ଲୋକ ନିଯୁକ୍ତକରି ମଶା ଅଣାଇ ନିଅନ୍ତି ।

ଥରେ ମାନସନ କହିଲେ ଯେ, ଯେଉଁପାଣିରେ ମଶା ଡିମ୍ବ ଦେଉଛନ୍ତି, ସେହି-ପାଣି ପିଇବାଫଳରେ ମ୍ୟାଲେରିଆ ଜ୍ୱର ହେଉଅଛି । ସେ ଏହି ବିଷୟ ପରୀକ୍ଷା କରିବା-ପାଇଁ ସ୍ଥିରକଲେ । ସୁସ୍ଥଲୋକମାନଙ୍କୁ ସେହି ପାଣି ପିଇବାକୁ ଦେଲେ । ନିଜେମଧ୍ୟ ପିଇଲେ । କିନ୍ତୁ କେହିହେଲେ ରୋଗରେ ଆକ୍ରାନ୍ତ ହେଲେନାହିଁ ।

ଏହି ସମୟରେ ବାଙ୍ଗାଲୋର ଅଞ୍ଚଳରେ ଝାଡ଼ା ମହାମାରୀ ରୂପରେ ଦେଖା-ଦେଇଥାଏ । ଏହି ରୋଗର ପ୍ରତିକାର ନିମନ୍ତେ ସେ ଭାରତ ସରକାରଙ୍କଦ୍ୱାରା ବାଙ୍ଗା-ଲୋରକୁ ପଠାଗଲେ । ସେ ସେଠାରେ ଏପରି କାର୍ଯ୍ୟବ୍ୟସ୍ତ ହୋଇପଡ଼ଲେ ଯେ, ଅନ୍ୟକୌଣସି ବିଷୟ ଭାବିବା ପାଇଁ ଅବସର ପାଇଲେନାହିଁ, ତାଙ୍କର ଗବେଷଣା ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ ବନ୍ଦ ରହିଲା ।

ବାଙ୍ଗାଲୋରରେ ତାଙ୍କର କାର୍ଯ୍ୟ ସରିଆସିଲା । କିଛିଦିନ ଛୁଟିନେଇ ସେ ଗବେଷଣା କରିବାକୁ ଇଚ୍ଛାକଲେ । ଛୁଟିନେଇ ଗୋଟିଏ ଜଙ୍ଗଲ ଅଞ୍ଚଳକୁ ଗଲେ । ସେହି ସ୍ଥାନରେ ମଶାମାନଙ୍କର ପ୍ରାଦୁର୍ଭାବ ବେଶୀ । ଏହିଠାରେ ସେ ନିଜେ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ପଡ଼ଲେ । ଅତ୍ୟନ୍ତ ଆଗ୍ରହ ସହକାରେ ଜ୍ୱରର ଲକ୍ଷଣମାନ ନିରୀକ୍ଷଣ କଲେ । ସେ ନିଜେ କିପରି ଏହି ଜ୍ୱରର କବଳରେ ପଡ଼ଲେ, ତାହା ଜାଣିବାକୁ ଖୁବ୍ ଚେଷ୍ଟା-କଲେ । ଅପରିଷ୍କାର ଜଳପାନ କରିଥିବା ହେତୁ ଏହିରୋଗ ହୋଇଥିବ ବୋଲି ସନ୍ଦେହ କରିଥିଲେ । ମାତ୍ର ସେ ପୂର୍ବରୁ ଏହା ପରୀକ୍ଷାକରିଥିବାରୁ, ତାଙ୍କର ସନ୍ଦେହ ଦୂରୀଭୂତ ହୁଏ । ଜଳ ଏହିରୋଗର କାରଣ ନୁହେଁବୋଲି ତାଙ୍କର ନିଶ୍ଚିତ ଧାରଣା ହୋଇଥିଲା । ତାଙ୍କର ଅକସ୍ମାତ ଗୋଟିଏ କଥା ମନେପଡ଼ଲା । ଦିନେ ଗୋଟିଏ ଗେଷ୍ଟ ହାଉସରେ ବିଶ୍ରାମ ନେଉଥିବା ସମୟରେ ତାଙ୍କୁ ମଶାଟିଏ କାମୁଡ଼ ଦେଇଥିଲା । ସେହିଜାତୀୟ ମଶା ସେ ପୂର୍ବରୁ କେବେହେଲେ ଦେଖି ନ ଥିଲେ । ଏହି ମଶାର ଡେଣାଗୁଡ଼କ ଧଳା ଓ ସେଇଟି ସିଧା ଭାବରେ ବସିଥିଲା । ପ୍ରକୃତରେ ଏହି ମଶା ମ୍ୟାଲେରିଆ ଜ୍ୱରର ବାହକ । ତିନିମାସ ପରେ ସେ ଏହା ଜାଣିପାରିଥିଲେ ।

ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତହୋଇ ରସ ଦୁର୍ବଳ ହୋଇ ଦେଇଥିଲେ । ତାଙ୍କର ମାନସିକ ଅବସ୍ଥା ଭଲ ନ ଥିଲା । ଏତେବେଳକୁ ତାଙ୍କର ଛୁଟି ସରିଆସିଲା । ସେ ଫେରି-ଯାଇ ସିକନ୍ଦରବାଦରେ ତାଙ୍କର ପୂର୍ବ କାର୍ଯ୍ୟରେ ଯୋଗଦେଲେ ।

ସିକନ୍ଦରବାଦରେ ସେ ପୁନର୍ବାର ତାଙ୍କ କାର୍ଯ୍ୟରେ ଲାଗିଲେ । ସେତେବେଳକୁ ଜୁନ ମାସ, ବର୍ଷାର ଦେଖାନାହିଁ, ଖୁବ୍ ଗରମ ହେଉଥାଏ । ଏତେ ଗରମରେ କାର୍ଯ୍ୟ-କରିବା ପାଇଁ ତାଙ୍କୁ ଖୁବ୍ କଷ୍ଟହୁଏ । ପବନହେଲେ ମଶାଗୁଡ଼କ ଉଡ଼ିଯିବାର ଭୟ ଥିବାରୁ ସେ ପଙ୍ଖା ବ୍ୟବହାର କରିପାରନ୍ତି ନାହିଁ । ଏତିକିବେଳକୁ ତାଙ୍କର ଅଣୁବୀକ୍ଷଣ ଯନ୍ତ୍ରଟି ଖରାପ ହୋଇଯାଇଥାଏ । ଆଉଗୋଟିଏ ନୂଆଯନ୍ତ୍ର ପାଇବା ଅସମ୍ଭବ, ତଥାପି ମଧ୍ୟ ସେ ଯଥେଷ୍ଟ ପରିଶ୍ରମ କରନ୍ତି ।

ଅଗଷ୍ଟ ମାସ ପନ୍ଦର ତାରିଖ ଦିନ ରସଙ୍କର ଜଣେ ସହକାରୀ ଗୋଟିଏ ମଶାନେଇ ତାଙ୍କୁ ଦେଲେ । ସେ ମଶାଟିକୁ ଦେଖି ଜଙ୍ଗଲରେ ଏହିଜାତୀୟ ମଶା ଦେଖିଥିବାର

ଜାଣିପାରିଲେ । ପରଦିନ ସେହିଜାତୀୟ ଅନେକଗୁଡ଼ାଏ ମଶା ଧରଇଲେ । ତିନିଦିନ ପର୍ଯ୍ୟନ୍ତ ସେ ମଶାଗୁଡ଼ିକୁ ପରୀକ୍ଷାକଲେ । ମାତ୍ର କିଛି ଜଣାଗଲା ନାହିଁ, କେବଳ ଦୁଇଟି ମଶା ବ୍ୟତୀତ ଅନ୍ୟସମସ୍ତ ମଶାଗୁଡ଼ିକୁ ପରୀକ୍ଷା କରିସାରିଥିଲେ । କିନ୍ତୁ କିଛି ଜଣା ନ ଥିବାରୁ ସେ ହତାଶହୋଇ ପଡ଼ିଲେ । ଏତେବେଳକୁ ସେ ପ୍ରାୟ ଏକହଜାର ବିଭିନ୍ନ-ଜାତୀୟ ମଶା ପରୀକ୍ଷା କରିଥିଲେ । ତେଣୁ ତାଙ୍କର ଆଉ ଆଶା ନ ଥାଏ । କଠିନ କାର୍ଯ୍ୟକରି ସେ ଦୁର୍ବଳହୋଇ ପଡ଼ଥାନ୍ତି । ସେ ଏହି ସମ୍ବନ୍ଧରେ ପରେ ଲେଖିଛନ୍ତି— "ଅଗଷ୍ଟ କୋଡ଼ିଏ ତାରିଖଦିନ ଆଉଦୁଇଟି ମଶା ଥାଆନ୍ତି । ଅନ୍ୟ ମଶାମାନଙ୍କ ବିଷୟରେ ମୋର ଅଦ୍ଭୁତ କାର୍ଯ୍ୟ ବାକିଥାଏ । ଓଠରଓଳି ପର୍ଯ୍ୟନ୍ତ ମୁଁ ଏହି ମଶା ଦୁଇଟିଙ୍କୁ ପରୀକ୍ଷା କରିବାର ସୁଯୋଗ ପାଇ ନ ଥିଲି । ସେତେବେଳକୁ ମୋର ଚକ୍ଷୁ କ୍ଳାନ୍ତ ହୋଇପଡ଼ିଥିଲା । ଏହାପରେ ଦାଗଯୁକ୍ତ ସପ୍ତମ ମଶାଟି ସଫଳତାର ସହିତ ବ୍ୟବଚ୍ଛେଦ କରିଥିଲି । ପ୍ରତ୍ୟେକ ସେଲ ଖୋଜିଲି କିନ୍ତୁ ନ ପାଇ ନିରଶହେଲି । ସେ ପର୍ଯ୍ୟନ୍ତ ମୁଁ ମଶାଟିର ପେଟ ଦେଖି ନ ଥିଲି । ମୁଁ ଯେତେବେଳେ ଖୋଜିବା ଛାଡ଼ଦେବି ବୋଲି ସ୍ଥିରକଲି, ଠିକ୍ ସେତିକିବେଳେ ଗୋଟିଏ କ୍ଷୁଦ୍ର ଗୋଲାକାର ସେଲ ଦେଖିବାକୁ ପାଇଲି । ସ୍ୱତପ୍ରବୃତ୍ତ ହୋଇ ମୁଁ ଭାବିଲି ଯେ, ଏହା ଗୋଟିଏ ନୂଆଜିନିଷ । ଆହୁରି ଭଲଭାବରେ ଦେଖିବା ଫଳରେ ସେହିପରି ଜିନିଷ ଗୁଡ଼ାଏ ଦେଖାଗଲା । ମୁଁ ବର୍ତ୍ତମାନ ଗୋଟିଏ ସେଲଉପରେ ଲେନ୍‌ସକୁ ସାବଧାନ ସହକାରେ ରଖିଲି ଏବଂ ଦେଖିଲି ଯେ, ଏହା ଭିତରେ କେତେ-ଗୁଡ଼ାଏ କ୍ଷୁଦ୍ର କଳାଦାନା ପରି ଜିନିଷ ଅଛି, ଯେଉଁଗୁଡ଼ିକ କି ମ୍ୟାଲେରିଆ ଜୀବାଣୁପରି । ସେହି ମଶା ଭିତରେ ମୁଁ ବାରେଟି ସେଲ ଗଣିଥିଲି । କିନ୍ତୁ ମୁଁ କାର୍ଯ୍ୟକରି ଏପରି କ୍ଳାନ୍ତ-ହୋଇ ପଡ଼ିଥିବାରୁ ଏବଂ ଏହାପୂର୍ବରୁ ଅଧିକାଂଶ ସମୟରେ ହତାଶ ହୋଇଥିବାରୁ ସେତେବେଳେ ଏହି ଜିନିଷ ନିରୀକ୍ଷଣ କରିବା ମୂଲ୍ୟ ବୁଝିପାରି ନ ଥିଲି ।

ରୋନାଲଡ ଅତ୍ୟନ୍ତ କ୍ଳାନ୍ତହୋଇ ପଡ଼ିଥିଲେ ଓ ବିଶ୍ରାମ ନେବାପାଇଁ ସେ ଶୋଇବାକୁ ଚାଲିଗଲେ । ଏହି ଘଟଣାର ପରଦିନ ସେ ଅନ୍ୟ ମଶାଟିକୁ ପରୀକ୍ଷା କଲେ । ଜୀବାଣୁଗୁଡ଼ିକ ମଶାପେଟରେ ଥିଲେ ଏବଂ ସେଗୁଡ଼ିକ ଆଉଟିକିଏ ବଡ଼ ଦେଖା-ଯାଉଥିଲେ । ବର୍ତ୍ତମାନ ସେ ନିଶ୍ଚିତଭାବରେ ଜାଣିପାରିଲେ ଯେ, ମଶା ମ୍ୟାଲେରିଆର ବାହକ । ଜୀବାଣୁଗୁଡ଼ିକ କିପରି ମଶାଦ୍ୱାରା ସୁସ୍ଥ ଶରୀରରେ ପ୍ରବେଶ କରୁଛନ୍ତି— ଏହି ପ୍ରଶ୍ନ ତାଙ୍କ ମନରେ ଉଦୟହେଲା । ସେ ଅନୁମାନ କଲେ ଯେ ଅଳ୍ପ କେତେଦିନ ମଧ୍ୟରେ ଏହା ଜଣା ପଡ଼ିଯିବ । ତାଙ୍କର ଏହି ଆବିଷ୍କାର ଡାକ୍ତର ପ୍ୟାଟ୍ରିକ୍ ମାନସନଙ୍କୁ ଜଣାଇବା ନିମିତ୍ତ ଭାବିଲେ । ଏହି ସମୟରେ ତାଙ୍କୁ ବମ୍ବେ ଯିବାପାଇଁ ଆଦେଶ ମିଳିଲା । ତେଣୁ ତାଙ୍କର କାର୍ଯ୍ୟ ପୂରହୋଇ ପାରିଲାନାହିଁ । ଅସଂପୂର୍ଣ୍ଣ ଭାବରେ ରହିଗଲା ।

ସେ ବମ୍ବେଯାଇ ତାଙ୍କର ନୂତନ କାର୍ଯ୍ୟରେ ଯୋଗଦାନ କଲେ । ଗବେଷଣା

କରିବା ପାଇଁ ଏଥିରେ ତାଙ୍କୁ ଆଉ ସମୟ ମିଳିଲା ନାହିଁ । ଫଳତଃ ତାଙ୍କର କାର୍ଯ୍ୟ ବନ୍ଦ ରହିଲା ।

କିଛିଦିନ ପରେ ସେ ଗବେଷଣା ଶେଷକରି ମ୍ୟାଲେରିଆ ରୋଗର କାରଣ ନିର୍ଣ୍ଣୟ କରନ୍ତି । ଜୀବାଣୁଗୁଡ଼ିକ ମଶା ପେଟରେ ବୃଦ୍ଧିପ୍ରାପ୍ତ ହୁଅନ୍ତି । ମଶା କୌଣସି ଲୋକକୁ କାମୁଡ଼ିଲେ, ତା'ର ମୁହଁଦେଇ ଜୀବାଣୁଗୁଡ଼ିକ ମାନବ ଶରୀରରେ ପ୍ରବେଶ କରନ୍ତି । ଏହିପରି ଉପାୟରେ ଅନ୍ୟଜଣେ ସୁସ୍ଥବ୍ୟକ୍ତି ମ୍ୟାଲେରିଆ କବଳରେ ପଡ଼େ । କେବଳ ଗୋଟିଏ ରକମର ମଶା ମ୍ୟାଲେରିଆ ରୋଗର ବାହକ, ସେଇଟି ହେଉଛି,– ଆନୋଫିଲିସ । ପରେ ସେ ଜାଣିପାରିଲେ ଯେ, କେବଳ ସ୍ତ୍ରୀ ଆନୋଫିଲିସ୍ କାମୁଡ଼ିଲେ ମ୍ୟାଲେରିଆ ହୁଏ । ପୁରୁଷ ଆନୋଫିଲିସର ଚଳପାଟି ନ ଥିବାରୁ, ତାହା ମଣିଷକୁ କାମୁଡ଼ ପାରେନାହିଁ । ସ୍ତ୍ରୀ ମଶା ମଣିଷକୁ କାମୁଡ଼ି, ଜୀବାଣୁଗୁଡ଼ିକ ସୁସ୍ଥ ଶରୀରରେ ପ୍ରବେଶ କରାଏ । ଏହି ମଶା ରକ୍ତଖାଇ ଜୀବନଧାରଣ କରେ । ରସ ଏହାସବୁ ଜାଣିପାରି ଆନନ୍ଦରେ ବିହ୍ୱଳହୋଇ ପଡ଼ିଲେ । ସେ ନିଜେ ଏ ସମ୍ବନ୍ଧରେ ଲେଖିଛନ୍ତି—ଏହିପରି ମୁହୂର୍ତ୍ତ ଗୋଟିଏ ଶତାବ୍ଦୀରେ ଜଣେ କିମ୍ବା ଦୁଇଜଣଙ୍କ ଭାଗ୍ୟରେ ଆସିଥାଏ । ବକ୍ତା, ବିଜେତା ଓ ରାଜନୈତିକମାନଙ୍କୁ (Statesman) ବିଜୟହେତୁ ଯେଉଁ ଆନନ୍ଦ ମିଳିଥାଏ, ଏପରି ଆନନ୍ଦ ତାହା ଅପେକ୍ଷା ଅଧିକ । କାରଣ, ଏହାଫଳରେ ଯେଉଁକାର୍ଯ୍ୟ ସାଧିତ ହୁଏ, ତାହା କୌଣସି କ୍ଷୁଦ୍ର ଜାତିଗତ ସୁବିଧାପାଇଁ ନୁହେଁ, ଏହି ସୁଯୋଗ ସବୁଲୋକଙ୍କ ପାଇଁ ମିଳିଥାଏ । ଏହି ସୁଯୋଗ ସବୁଲୋକଙ୍କପାଇଁ ମିଳିଥାଏ । ଏହି ସୁଯୋଗ କେବଳ ଆଜିପାଇଁ ନୁହେଁ, ସବୁସମୟ ପାଇଁ ସେ ପର୍ଯ୍ୟନ୍ତ "ଭବିଷ୍ୟତ ଅତୀତକୁ ଭୁଲିପାରି ନ ଥାଏ" ରୋନାଲଡ଼ଙ୍କର ଏହିକଥା ଅକ୍ଷରେ ଅକ୍ଷରେ ସତ । ଯେଉଁବ୍ୟକ୍ତି ସ୍ୱୀୟ ସାଧନାବଳରେ ମାନବ ଜାତିକୁ ରୋଗଦାଉରୁ ରକ୍ଷା କରନ୍ତି, ସେ ମାନବସମାଜରେ ପୂଜ୍ୟ । ଅନ୍ୟାନ୍ୟ ଲୋକଙ୍କ ଅପେକ୍ଷା ତାଙ୍କର ସମ୍ମାନ ନିଶ୍ଚୟ ଅଧିକ ।

ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ଆନୋଫିଲିସ୍ ମଶା ନଈ ନାଳ ପ୍ରଭୃତିରେ ଜନ୍ମ-ହୋଇଥାଆନ୍ତି । ଯେଉଁ ସ୍ଥାନମାନଙ୍କରେ ପାଣି ଜମାହୋଇ ରହେ, ସେଠାରେ ମଶାମାନେ ଜନ୍ମକରିବାପାଇଁ ସୁବିଧା ପାଇଥାନ୍ତି । ତେଣୁ ଏହିସବୁ ସ୍ଥାନରୁ ପାଣି ନିଷ୍କାସନ କରିବାର ସୁବିଧା କରିଦେଲେ, ମଶାମାନଙ୍କରି ବଂଶବୃଦ୍ଧି ହେବନାହିଁ । ଫଳରେ ନିକଟବର୍ତ୍ତୀ ସ୍ଥାନରୁ ମ୍ୟାଲେରିଆର ପ୍ରାଦୁର୍ଭାବ କମିଯିବ ।

ଏହି ସ୍ମରଣୀୟ ଆବିଷ୍କାରର ଦୁଇବର୍ଷପରେ ଭାରତୀୟ ମେଡ଼ିକାଲ ସର୍ଭିସରୁ ଅବ୍ୟାହତି ନେଇ ରୋନାଲଡ଼ ବିଲାତ ପ୍ରତ୍ୟାବର୍ତ୍ତନ କଲେ । ଲିଭରପୁଲଠାରେ ଅବସ୍ଥିତ ସ୍କୁଲ ଅଫ୍ ଟପିକାଲ ମେଡ଼ିସିନ୍‌ରେ ଲେକଚରରଭାବେ ବା ବକ୍ତାଭାବେ ଯୋଗଦାନ-କଲେ । ପରେ ସେ ଲିଭରପୁଲ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବରେ ନିଯୁକ୍ତ

ହୋଇଥିଲେ । ଖ୍ରୀ ୧୯୧୩ ରେ ବିଲାତରେ ପ୍ରସିଦ୍ଧ କିଙ୍ଗ୍‌ସ କଲେଜରେ ଯୋଗଦାନ କଲେ ।

ରୋନାଲଡଙ୍କର ଆବିଷ୍କାର ଡାକ୍ତର ଏବଂ ବୈଜ୍ଞାନିକ ମହଲରେ ଚହଳ ପକାଇଦେଲା । ବୈଜ୍ଞାନିକମାନେ ତାଙ୍କ କାର୍ଯ୍ୟର ମୂଲ୍ୟ ବୁଝିପାରିଲେ । ଖ୍ରୀ ୧୯୦୨ରେ ତାଙ୍କର ଏହି ଆବିଷ୍କାର ନିମିତ୍ତ ସେ ନୋବେଲ ପ୍ରାଇଜ୍ ପାଇଲେ । ଖ୍ରୀ ୧୯୧୧ରେ ସମ୍ରାଟ ପଞ୍ଚମ ଜର୍ଜ ତାଙ୍କୁ ନାଇଟ୍ (K. C. B.) ଉପାଧିରେ ଭୂଷିତ କରିଥିଲେ ।

ପ୍ରଥମ ପୃଥିବୀ ମହାଯୁଦ୍ଧ ଆରମ୍ଭ ହୋଇଥାଏ । ରୋନାଲଡ ଯୁଦ୍ଧ ବିଭାଗରେ ମ୍ୟାଲେରିଆ ଉପଦେଷ୍ଟାଭାବେ ଯୋଗଦାନ କଲେ । ତାଙ୍କର ଉପଦେଶାନୁଯାୟୀ କାର୍ଯ୍ୟ କରାଗଲା, ଯୁଦ୍ଧ ସରିଗଲା ଏବଂ ତାଙ୍କର କାର୍ଯ୍ୟ ନିମିତ୍ତ ସେ ଆଉ ଏକ ଉପାଧିରେ (K. C. M. G.) ଭୂଷିତହେଲେ । ବିଲାତ ଏବଂ ଅନ୍ୟାନ୍ୟ ଅନେକ ବିଦେଶୀ ବିଶ୍ୱ-ବିଦ୍ୟାଳୟ ମଧ୍ୟ ରୋନାଲଡଙ୍କର ଆବିଷ୍କାର ପାଇଁ ତାଙ୍କୁ ସମ୍ମାନଜନକ ଉପାଧି-ଦେଲେ ।

ରସ ମ୍ୟାଲେରିଆ ସମ୍ବନ୍ଧରେ ଗବେଷଣା କରୁଥିଲେ ମଧ୍ୟ ଅବସର ସମୟରେ ସାହିତ୍ୟ ଆଲୋଚନା କରୁଥିଲେ । ସେ ଗୋଟିଏ କବିତା ବହି ଏବଂ ଉପନ୍ୟାସ ଲେଖିଥିଲେ ।

ରୋନାଲଡ ବିଭିନ୍ନ କାର୍ଯ୍ୟରେ ନିୟୁକ୍ତ ଥାଇ ମଧ୍ୟ ମ୍ୟାଲେରିଆ ସମ୍ବନ୍ଧରେ ନିୟମିତ ଗବେଷଣା କରୁଥିଲେ । ଦୀର୍ଘବର୍ଷର ଗବେଷଣାର ଫଳ ସ୍ୱରୂପ ସେ ଖଣ୍ଡିଏ ଉପାଦେୟ ଓ ବହୁମୂଲ୍ୟ ପୁସ୍ତକ ଲେଖିଥିଲେ । ଏହି ବହିଟିର ନାମ "ଦି ପ୍ରିଭେସନ୍ ଅଫ୍ ମ୍ୟାଲେରିଆ" । ମ୍ୟାଲେରିଆ ଜ୍ୱରରୁ କିପରି ରକ୍ଷାପାଇବାକୁ ହେବ ତାହା ଥିଲା । ଏହି ପୁସ୍ତକର ବିଷୟବସ୍ତୁ । ଜଙ୍ଗଲଭୂମି ଓ ସନ୍ତସନ୍ତିଆ ସ୍ଥାନରେ ମଶାମାନେ ଅଣ୍ଡାଦେଇ ଥାନ୍ତି । ଗୃହ ନିକଟରେ ଛୋଟ ମଇଳା ପୋଖରୀ କିମ୍ବା ଅନ୍ୟାନ୍ୟ ସ୍ଥାନ ଯେଉଁଠାରେ କି ମଶାମାନେ ନିଜର ବଂଶ ବିସ୍ତାର କରିପାରିବେ । ସେଠାରୁ ଜଳ ନିଷ୍କାସନ କରିବା ଏକ ପ୍ରକୃଷ୍ଟ ଉପାୟ । ଘର ନିକଟରେ ଛୋଟ ଛୋଟ ଜଙ୍ଗଲ ବା ବୁଦାଗଛ ରଖିବା ଅନୁଚିତ । ଯଥେଷ୍ଟ ପରିମାଣରେ ସୂର୍ଯ୍ୟାଲୋକ ଓ ପବନ ଘର ମଧ୍ୟରେ ମିଳିଲେ ମଶା ରହିପାରନ୍ତି ନାହିଁ । ମଶରୀ ଭିତରେ ଶୋଇଲେ ମଶା କାମୁଡ଼ ପାରିବେନାହିଁ । ମ୍ୟାଲେ-ରିଆରେ ଆକ୍ରାନ୍ତ ହୋଇଥିବା ରୋଗୀମାନଙ୍କୁ ମଶରୀ ବ୍ୟବହାର କରିବାପାଇଁ ରୋନା-ଲଡ ଉପଦେଶ ଦେଲେ । ଏହାଫଳରେ ମଶା ରୋଗୀମାନଙ୍କୁ କାମୁଡ଼ ପାରିବେ ନାହିଁ ; ଓ ରୋଗର ବୃଦ୍ଧି ବନ୍ଦହୋଇଯିବ ।

ଗବେଷଣାକରି ଏବଂ ମ୍ୟାଲେରିଆ ବିରୁଦ୍ଧରେ ପୁସ୍ତକ ଲେଖି ସେ ନୀରବ ରହି

ନ ଥିଲେ । ଅତ୍ୟନ୍ତ ଉତ୍ସାହସହିତ ରସ ମ୍ୟାଲେରିଆ ବିରୁଦ୍ଧରେ ପ୍ରଚାର କରିଥିଲେ । ତାଙ୍କର ଏହି କାର୍ଯ୍ୟର ମୂଲ୍ୟ ବିଭିନ୍ନ ଦେଶବାସୀ ବହୁ ବିଳମ୍ବରେ ଜାଣିଲେ । କ୍ରମେ ଲୋକମାନେ ରୋନାଲଡଙ୍କର ଉପଦେଶ କାର୍ଯ୍ୟକାରୀ କରିବାପାଇଁ ଉତ୍ସାହ ଦେଖାଇଲେ । ବିଭିନ୍ନ ଦେଶରେ ମ୍ୟାଲେରିଆ ବିରୁଦ୍ଧରେ ଅଭିଯାନ ଆରମ୍ଭ ହେଲା । ଇଟାଲିରେ ପ୍ରତ୍ୟେକ ବର୍ଷ ପ୍ରାୟ ୧୬୦୦୦ ଲୋକ ମ୍ୟାଲେରିଆ କବଳରେ ପଡ଼ି ପ୍ରାଣ ହରାଉଥିଲେ । ରୋନାଲଡଙ୍କର ଉପଦେଶାନୁସାରେ କାର୍ଯ୍ୟ କରିବାଫଳରେ ମୃତ୍ୟୁସଂଖ୍ୟା ଯଥେଷ୍ଟ କମିଗଲା । ଏହି ସଂଖ୍ୟା ୧୬୦୦୦ରୁ କମି ୪୦୦୦ରେ ପହଞ୍ଚିଲା । କେବଳ ସାତବର୍ଷ ମଧ୍ୟରେ ଏହା ସମ୍ଭବ ହୋଇପାରିଲା । ସୁଏଜକେନାଲ ନିକଟରେ ଅବସ୍ଥିତ ଇସମାଲିଆ ନାମକ ସ୍ଥାନରେ ମ୍ୟାଲେରିଆର ପ୍ରାଦୁର୍ଭାବ ଅତ୍ୟନ୍ତ ପ୍ରବଳ ଥିଲା । ଅଳ୍ପ କେତେବର୍ଷ-ମଧ୍ୟରେ ମ୍ୟାଲେରିଆରେ ପ୍ରାଣତ୍ୟାଗ କରିବା କଥା ଆଉ ଶୁଣାଗଲାନାହିଁ ।

ଫର୍ଡିନାଣ୍ଡ ନାମକ ଜଣେ ଫରାସୀଲୋକ ପାନାମା କେନାଲ ଖୋଳାଇବାପାଇଁ ଚେଷ୍ଟା କରିଥିଲେ । ସେ ତାଙ୍କସହିତ ପାଞ୍ଚଶହ ଲୋକନେଇ କାର୍ଯ୍ୟକରିବା ପାଇଁ ଯାଇଥିଲେ । ମାତ୍ର ସେମାନେ ମ୍ୟାଲେରିଆ ଜ୍ୱରରେ ପ୍ରାଣତ୍ୟାଗକଲେ । ସେମାନଙ୍କ ମଧ୍ୟରୁ କେହିହେଲେ ଜଣେ ବଞ୍ଚିଲେନାହିଁ । ଏହାପରେ କେନାଲ ଖୋଳାକାର୍ଯ୍ୟ ଅନେକଦିନ ପର୍ଯ୍ୟନ୍ତ ବନ୍ଦରହିଲା । ରୋନାଲଡଙ୍କର ଆବିଷ୍କାରପରେ ପାନାମା କେନାଲ ଖୋଳାହେବାର ଆୟୋଜନ କରାଗଲା । କ୍ରମେ ପାନାମା ଅଞ୍ଚଳରୁ ମ୍ୟାଲେରିଆ ଲୋପ-ପାଇଲା ଓ ନିର୍ବିଘ୍ନରେ କେନାଲ ଖୋଳାଗଲା । ଆଜି ଆମେରିକାରେ ପାନାମା ଏକ ସ୍ୱାସ୍ଥ୍ୟକର ଅଞ୍ଚଳ ।

ଖ୍ରୀ ୧୯୨୬ରେ ପଟନହିଥଠାରେ ରସ ଇନଷ୍ଟିଚ୍ୟୁଟ ସ୍ଥାପନ କରାଗଲା । ଗ୍ରୀଷ୍ମାଞ୍ଚଳୀୟ ରୋଗ ସମ୍ବନ୍ଧରେ ଗବେଷଣା କରିବା ଏହି ଇନଷ୍ଟିଚ୍ୟୁଟର କାର୍ଯ୍ୟ ।

ମ୍ୟାଲେରିଆର ଉତ୍ପତ୍ତି ଓ ଏହାର କବଳରୁ ରକ୍ଷା ପାଇବା ନିମନ୍ତେ ସମସ୍ତ ଉପାୟ ଜଣାଗଲା । ତଥାପି ଲୋକମାନେ ଏହି ରୋଗରୁ ରକ୍ଷା ପାଇବା ପାଇଁ ମନଯୋଗ ଦେଉନାହାନ୍ତି । ଆଜି ମଧ୍ୟ ଲକ୍ଷ ଲକ୍ଷ ବ୍ୟକ୍ତି ମ୍ୟାଲେରିଆ ଜ୍ୱରରେ ପଡ଼ି ପ୍ରାଣ ହରାଉଛନ୍ତି ।

ମ୍ୟାଲେରିଆ ବିରୁଦ୍ଧରେ ରସଙ୍କର ଅଭିଯାନ ପ୍ରଶଂସନୀୟ । ଏହି ଜ୍ୱର କିପରି ଭାବେ ଲୋକମାନଙ୍କୁ ଆକ୍ରମଣ କରେ ତାହା ସେ ଜାଣିଥିଲେ । ତେଣୁ ମ୍ୟାଲେରିଆ ଲୋପ କରିବା ପାଇଁ ସେ ବଦ୍ଧପରିକର ହେଲେ । ବ୍ୟକ୍ତିଗତ ଭାବେ ସେ ଏଥିପାଇଁ ଅନେକ କାର୍ଯ୍ୟ କରିଛନ୍ତି । ତାଙ୍କର ଗବେଷଣାର ପ୍ରଣାଳୀ ଉପରେ ନିର୍ଭର କରି ପୀତ ଜ୍ୱରର କାରଣ ଜଣାଗଲା । ଆମେରିକାର ଡାକ୍ତରମାନେ ଗବେଷଣା କରି ଜାଣିପାରିଲେ

ଯେ, ଏକଜାତୀୟ ମଶା ପୀତ ଜ୍ୱର ଜୀବାଣୁର ବାହକ ରସଙ୍କ ଆବିଷ୍କାର ଫଳରେ ପୀତ ଜ୍ୱରର କାରଣ ଜଣାଗଲା । ସେ ନିଜେ ମଶାମାନଙ୍କ ବିରୁଦ୍ଧରେ କାର୍ଯ୍ୟ କରିବା ପାଇଁ ବାହାରିଲେ । ଏଥିପାଇଁ ସେ ପୃଥିବୀର ବିଭିନ୍ନ ଅଞ୍ଚଳ ଭ୍ରମଣ କରିଥିଲେ । କିପରି ଭବେ ମଶାମାନଙ୍କୁ ନିପାତ କରି ହେବ ସେଥିପାଇଁ ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ସିରଲିୟନ ନାମକ ସ୍ଥାନ ଶ୍ୱେତାଙ୍ଗମାନଙ୍କର କବର ବୋଲି ସମସ୍ତେ ଜାଣନ୍ତି । ଏହି ସ୍ଥାନରେ ମଶାମାନଙ୍କ ଦୌରାତ୍ମ୍ୟ ଅତ୍ୟନ୍ତ ବେଶୀ । ଶ୍ୱେତାଙ୍ଗ ବ୍ୟକ୍ତିମାନେ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ବହୁ ସଂଖ୍ୟାରେ ମୃତ୍ୟୁ ବରଣ କରିବା ହେତୁ ଏହି ସ୍ଥାନର ନାମ କରଣ ଏପରି ଭବେ କରଯାଇଥିଲା । ସିରଲିୟନ ଠାରେ କାର୍ଯ୍ୟ କରିବା ପାଇଁ ରସ ଠିକ୍ କରି ସେଠାକୁ ଯାତ୍ରାକଲେ । ସେ ଏହି ବିଷୟରେ ସେଠାର ଲାଟଙ୍କ ସହିତ ଆଲୋଚନା କଲେ । ମଶାମାନଙ୍କ ବଂଶ ଲୋପ କରିବା ପାଇଁ ସ୍ୱୀୟ କାର୍ଯ୍ୟକ୍ରମ ସ୍ଥିର କରି କାର୍ଯ୍ୟ ଆରମ୍ଭ କରିଦେଲେ । ଜଳାଭୂମି ଓ ନାଳମାନଙ୍କରୁ ପାଣି ନିଷ୍କାସନ କରଗଲା ସହର ମଧ୍ୟରେ ଜମି ରହିଥିବା ଆବର୍ଜନା ପରିଷ୍କାର ହେଲା । ମଶା ଯେ କୌଣସି ସ୍ଥାନରେ ସୁବିଧା ପାଇଲେ ଅଣ୍ଡା ଦେଇଥାନ୍ତି । ସହର ଭିତରେ ଅନେକ ଖୋଳା ଓ ଭଙ୍ଗା ବାକ୍ସ ଟିଣ ବୋତଲ ପ୍ରଭୃତି ପଡ଼ିଥିଲା । ବର୍ଷା ଦିନରେ ଏହା ମଧ୍ୟରେ ପାଣି ଜମି ରହୁଥିଲା । ଫଳରେ ମଶାମାନଙ୍କୁ ଅଣ୍ଡା ଦେବା ପାଇଁ ଖୁବ୍ ସୁବିଧା ହେଉଥିଲା । ଚଞ୍ଚଳ କାର୍ଯ୍ୟ ଆଗେଇ ନେବା ଉଦ୍ଦେଶ୍ୟରେ ରେନାଲ୍ଡ ରସ ଲୋକ ନିଯୁକ୍ତ କରି ଏହିସବୁ ଜିନିଷ ନେଇ ସମୁଦ୍ର ଭିତରେ ପକାଇ ଦେଲେ । ଅଳ୍ପ କେତେ ଦିନ ଭିତରେ ସହରଟି ସଫାସୁତୁରା ହୋଇଗଲା । ପାଣି ଓ ଆବର୍ଜନା ଜମି ନ ରହିବା ପାଇଁ ବ୍ୟବସ୍ଥା କରଗଲା । ଫଳରେ ଅଳ୍ପ କେତେ ବର୍ଷ ମଧ୍ୟରେ ସେହି ସହରରୁ ମ୍ୟାଲେରିଆ ସଂପୂର୍ଣ୍ଣ ଭବେ ଲୋପ ପାଇଗଲା । ଆଜି ସେହି ସହରଟି ଏକ ଜନାକୀର୍ଣ୍ଣ ଅଞ୍ଚଳ ।

ଏହି ସମସ୍ତ କାର୍ଯ୍ୟକରି ମଧ୍ୟ ସେ ସନ୍ତୁଷ୍ଟ ନଥିଲେ । ତାଙ୍କର କାର୍ଯ୍ୟ ହେତୁ ମ୍ୟାଲେରିଆ ଅନେକ ପରିମାଣରେ କମି ଯାଇଥିଲା । ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଏହି ରୋଗର ପ୍ରତିକାର ନିମନ୍ତେ ଯତ୍ନ କରିଥିଲେ ।

ମ୍ୟାଲେରିଆ ସମ୍ବନ୍ଧରେ ଗବେଷଣା କରିବା ପାଇଁ ପୃଥିବୀର ଅନେକ ଦେଶର ଲୋକମାନେ ସାହାଯ୍ୟ ଦେଇଥିଲେ । ସେହି ଅର୍ଥ ସାହାଯ୍ୟରେ 'ରସ ଇନଷ୍ଟିଚ୍ୟୁଟ' ଏଣ୍ଡ ହସପିଟାଲ ଫର ଟ୍ରପିକାଲ ଡିଜିଜେସ ସ୍ଥାପିତ ହୁଏ । ପରେ ଏହି ଅନୁଷ୍ଠାନର ନାମ ବଦଳି (ଲଣ୍ଡନ ସ୍କୁଲ ଅଫ୍ ହାଇଜିନ୍ ଏଣ୍ଡ ଟ୍ରପିକାଲ ମେଡ଼ସନ୍ ହେଲା । ଏହି-ଠାରେ ଆଜିକାଲି ମଧ୍ୟ ଗ୍ରୀଷ୍ମାଞ୍ଚଳୀୟ ରୋଗ ସମ୍ବନ୍ଧରେ ଗବେଷଣ କରିବା ପାଇଁ ବିଭିନ୍ନ ଦେଶର ଲୋକମାନେ ସୁଯୋଗ ପାଉ ଅଛନ୍ତି ।

ଏକ ଦୀର୍ଘ କର୍ମମୟ ଜୀବନ ଯାପନ କରି ରେନାଲଡ ରସ ୭୫ ବର୍ଷ ବୟସରେ ମୃତ୍ୟୁ ବରଣ କଲେ । ମୃତ୍ୟୁ ସମୟକୁ ସେ ପୃଥିବୀ ବିଖ୍ୟାତ ହେବାର ସୌଭାଗ୍ୟ ଅର୍ଜନ

କରି ପାରିଥିଲେ । ଏହି ବିଖ୍ୟାତ ଆବିଷ୍କାରକ ସ୍ୱୀୟ ଜୀବନବ୍ୟାପି ମ୍ୟାଲେରିଆ ବିରୁଦ୍ଧରେ ଅଭିଯାନ ଚଳାଇ କେତେକ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ତାଙ୍କର ଆଶା ସଂପୂର୍ଣ୍ଣ ଭାବେ ସଫଳ ହୋଇପାରି ନଥିଲା । ଲୋକମାନେ ମନ ପ୍ରାଣଦେଇ ଏହି ରୋଗ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରି ନଥିଲେ ।

ଯେଉଁଦିନ ସେ ତାଙ୍କର ଗବେଷଣାରେ ସଫଳତା ଲାଭ କରିଥିଲେ, ମ୍ୟାଲେରିଆ ଜ୍ୱର କିପରି ହୁଏ ତା'ର କାରଣ ଜାଣିପାରିଥିଲେ ସେହି ଦିନଟି ତାଙ୍କ ଜୀବନର ସ୍ମରଣୀୟ ଦିବସ ହୋଇ ରହିଥିଲା । ସେ ଅଗଷ୍ଟ କୋଡ଼ିଏ ତାରିଖକୁ ମସ୍କୁଇଟୋ ଡେ ବୋଲି କହୁଥିଲେ । ପ୍ରତ୍ୟେକ ବର୍ଷରେ ଏହି ଦିନଟି ପାଳନ କରୁଥିଲେ । ରୋନାଲଡଙ୍କର ଆବିଷ୍କାର ଫଳରେ ଏକ ପ୍ରଧାନ ରୋଗର କାରଣ ଜଣାଗଲା । ମ୍ୟାଲେରିଆ କବଳରୁ ରକ୍ଷା ପାଇବା ପାଇଁ ଉପାୟମାନ ସ୍ଥିର କରଗଲା । ଆଜି ମ୍ୟାଲେରିଆରେ ମୃତ୍ୟୁ ସଂଖ୍ୟା ପୂର୍ବ ଅପେକ୍ଷା ଯଥେଷ୍ଟ କମ । ଯେଉଁ ଦିନଟି ସେ ନିଷ୍ଠାପର ଭାବେ ପାଳନ କରୁଥିଲେ, ସେହି ଦିନଟି ପାଳନ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଆଜି ମଧ୍ୟ ପୃଥିବୀରୁ ମ୍ୟାଲେରିଆ ସଂପୂର୍ଣ୍ଣ ଭାବରେ ଲୋପ ପାଇ ନାହିଁ । ଏବେବି ଲକ୍ଷ ଲକ୍ଷ ଲୋକ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ଅସହାୟ ଭାବେ କରୁଣ ମୃତ୍ୟୁ ବରଣ କରୁଛନ୍ତି । ତେଣୁ ଆମ୍ଭେମାନେ ଏହି ସ୍ମରଣୀୟ ଅଗଷ୍ଟ ୨୦ ତାରିଖରେ ପ୍ରତିଜ୍ଞା କରିବା ଉଚିତ ଯେ, ପ୍ରତ୍ୟେକ ଲୋକ ତା'ର ପାରୁପର୍ଯ୍ୟନ୍ତ ଚେଷ୍ଟା କରି ମ୍ୟାଲେରିଆ ବିରୁଦ୍ଧରେ କାର୍ଯ୍ୟ କରିବ ।

ମ୍ୟାଲେରିଆ ବିରୁଦ୍ଧରେ କାର୍ଯ୍ୟ କରିଥିବା ହେତୁ ରୋନାଲଡ ପ୍ରଶଂସନୀୟ କିନ୍ତୁ ମ୍ୟାଲେରିଆ ମାନବ ଜାତିର ଏକ ମାତ୍ର ଶତ୍ରୁ ନୁହେଁ । ଆହୁରି ଅନେକ ରୋଗ ଅଛି ଯେଉଁଗୁଡ଼ିକ ମ୍ୟାଲେରିଆ ପରି ମାରାତ୍ମକ । ଏହିସବୁ ରୋଗ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବା ପ୍ରତ୍ୟେକ ଡାକ୍ତର ଓ ବୈଜ୍ଞାନିକଙ୍କର କର୍ତ୍ତବ୍ୟ ।

ଆଜିକୁ ଶହେ ବର୍ଷ ତଳେ ବହୁତ ଲୋକ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ପ୍ରାଣ ହରଉଥିଲେ । ରୋନାଲଡ ରସଙ୍କ ଆବିଷ୍କାର ହେତୁ ଏହି ରୋଗର କାରଣ ଜଣାଗଲା । ଲୋକମାନେ ମ୍ୟାଲେରିଆରୁ ରକ୍ଷା ପାଇବା ପାଇଁ ଚେଷ୍ଟା କଲେ । ଆଜି ମ୍ୟାଲେରିଆରେ ମୃତ୍ୟୁ ସଂଖ୍ୟା ଯଥେଷ୍ଟ କମିଯାଇଛି । ରୋନାଲଡଙ୍କର ଆବିଷ୍କାର ଫଳରେ ପୃଥିବୀର ଏକ ଚତୁର୍ଥାଂଶ ମ୍ୟାଲେରିଆ କବଳରୁ ରକ୍ଷା ପାଇଅଛି । ପୂର୍ବେ ଯେଉଁ ସ୍ଥାନ ମଶାମାନଙ୍କର କ୍ରୀଡାସ୍ଥଳୀ ଥିଲା ତାହା ଆଜି ମାନବର କ୍ରୀଡାସ୍ଥଳୀ ରୂପେ ପରିଗଣିତ ହେଉଅଛି ।

ରସଙ୍କ ଗବେଷଣାର ଫଳ କାର୍ଯ୍ୟରେ ଲଗାଇବା ସାରା ମାନବ ଜାତିର କର୍ତ୍ତବ୍ୟ ।

ବିବାଦ ପରିତ୍ୟାଗ କରି ମ୍ୟାଲେରିଆ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବା ସର୍ବାଦୌ ଆବଶ୍ୟକ । ଦେଶ ଦେଶ ଭିତରେ ଯୁଦ୍ଧ ନକରି ମଶକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ ହେବା ଆବଶ୍ୟକ । ଏହା କରଗଲେ ରେନାଲଡଙ୍କ ଆଶା କାର୍ଯ୍ୟରେ ପରିଣତ ହେବ । ମାନବ ଜାତି ମ୍ୟାଲେରିଆ କବଳରୁ ରକ୍ଷା ପାଇବ ।

ରେନାଲଡଙ୍କର ଜୀବନ ସାର୍ଥକ ଅଟେ । ଏପରି ସୁପୁତ୍ର ପାଇବା ଖୁବ୍ କମ ଲୋକଙ୍କ ଭଗ୍ୟରେ ଘଟିଥାଏ । ଭଗବାନ କରିଥାନ୍ତୁ ଭରତରେ ଏପରି ସୁପୁତ୍ର ଜନ୍ମ ହୋଇ ସ୍ୱୀୟ ଜନ୍ମ ଭୂମିର ଗୌରବ ବୃଦ୍ଧି କରନ୍ତୁ । ମାନବ ଜାତି ରୋଗମୁକ୍ତ ହୋଇ ସୁଖରେ ବାସ କରୁ ଏହା ଥିଲା ରସଙ୍କର ଅନ୍ତରର ଇଚ୍ଛା । ସେହି ମହାପୁରୁଷଙ୍କର ଇଚ୍ଛା ସଫଳ ହେଉ ।

ମହାତ୍ମା ରେନାଲଡ ଏଇ ମାନବ ଜାତିର ଅଶେଷ କଲ୍ୟାଣ ସାଧନ କରି ଅଛନ୍ତି । ମାନବ ଜାତି ତାଙ୍କ ଉଦ୍ଦେଶ୍ୟରେ ସ୍ୱୀୟ ଅନ୍ତରର ଶ୍ରଦ୍ଧା ଜଣାଉଛି ।



# ବିଶ୍ୱବିଚିତ୍ରା

ଡାନିସ ହାନସ ବୁଏଲଙ୍କଦ୍ୱାରା ଏକପ୍ରକାର ସ୍ୱତନ୍ତ୍ର ଯୋତା ନିର୍ମିତ ହୋଇଛି ; ଯାହାକୁ କି ପିନ୍ଧକରି ପାଣିରେ ଚାଲିହେବ ।

ପୃଥିବୀର ସମସ୍ତ ପରମାଣୁ ଅସ୍ତ୍ରର ଶତକଡା ୯୫ ଭାଗ ସୋଭିଏତ ରୁଷିଆ ଏବଂ ଆମେରିକା ନିକଟରେ ରହିଛି ।

ଜାପାନର ଓରିଏଣ୍ଟ ୱାଚ କମ୍ପାନୀ ଏକପ୍ରକାର ଘଣ୍ଟା ନିର୍ମାଣ କରିଛନ୍ତି ଯାହାର କଣ୍ଟାଗୁଡ଼ିକ ଓଲଟା ଦିଗରେ ବୁଲୁଛି । ଏହାର ଦାମ ପ୍ରାୟ ଏଗାର ଶହ ଟଙ୍କା ।

ଭାରତରେ ସର୍ବମୋଟ ୧୫ ହଜାର ଆଠ ଶହ ହାତୀ ରହିଛନ୍ତି ।

୧୫ ପଇସା ମୂଲ୍ୟର ଗୋଟିଏ ପୋଷ୍ଟକାର୍ଡ ଡାକ ଓ ତାର ବିଭାଗର ୫୨ ପଇସା ଖରଚ ହେଉଛି; ଫଳରେ ଏ ବାବଦରେ ବାର୍ଷିକ ପ୍ରାୟ ୩୬ କୋଟି ଟଙ୍କା କ୍ଷତି ହେଉଛି ।

ଏକ କିଲୋଗ୍ରାମ୍ ମହୁରେ ୩୦ ଶହ କ୍ୟାଲୋରୀରୁ ଅଧିକ ଖାଦ୍ୟସାର ରହିଛି ଯାହାକି ୬୫ଟି ଅଣ୍ଡା କିମ୍ବା ୫ ଲିଟର କ୍ଷୀରର ଖାଦ୍ୟସାର ସହ ପ୍ରାୟ ସମାନ ।

**ଆମ ଦେହର ଅଜବ କଥା**

ପ୍ରତି ୨୪ ଘଣ୍ଟା ଭିତରେ ଆମ ଦେହ ଭିତରେ କେତେ କ'ଣ କାର୍ଯ୍ୟ ହୁଏ, ତାହା ଭାବିଲେ ସତରେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସେଗୁଡ଼ିକ ହେଲା,

୧—୧୦୩୬୯୮ ଥର ହୃତ ସ୍ପନ୍ଦନ ହୁଏ ।

୨—ଦେହର ରକ୍ତ ପ୍ରାୟ ୨୬୦୩୭୦୦୦ କିଲୋମିଟର ରାସ୍ତା ଅତିକ୍ରମ କରିଥାଏ ।

୩—୨୩୦୪୦ ଥର ଆମେ ନିଃଶ୍ୱାସ ଛାଡ଼ୁ ।

୪—୧୨୪୦୦ ଲିଟର ବାୟୁ ଶ୍ୱାସକ୍ରିୟା ସାହାଯ୍ୟରେ ଆମେ ଦେହ ଭିତରକୁ ନେଉ ।

୫—ପାଣିସହିତ ମିଶାଇ ୨.୮ କିଲୋଗ୍ରାମ ଓଜନର ଖାଦ୍ୟ ଖାଉ ।

୬—ନିଦର ଶୋଇବା ସମୟରେ ୨୫ରୁ ୩୫ ଥର ପର୍ଯ୍ୟନ୍ତ କଡ଼ ଲେଉ-ଟାଉ ।

୭—ପ୍ରାୟ ୪୮୦୦ ଶବ୍ଦ ଆମ କଥାବାର୍ତ୍ତା ଭିତର ଦେଇ ଆମେ କାମରେ ଲଗାଉ ।

୮—ଆମର ନଖ ୦.୦୦୭୭ ମିଲିମିଟର ବଢ଼ିଯାଏ ।

**ଚଶମା ଓ ଆଖି**

ଚଶମା ପିନ୍ଧୁଥିବା ଲୋକ କୌଣସି ବସ୍ତୁକୁ ଚଶମା ପିନ୍ଧୁ ନଥିବା ଲୋକ ଅପେକ୍ଷା ସାମାନ୍ୟ ଡେରିରେ ଦେଖେ । ବୈଜ୍ଞାନିକମାନେ ଏବେ ଏହାର ହିସାବ ବାହାର କରିଛନ୍ତି । ତଦନୁସାରେ ଖାଲି ଆଖିରେ ଦେଖୁଥିବା ଚଶମା ପିନ୍ଧୁଥିବା ମଣିଷ ବ୍ୟକ୍ତି ଅପେକ୍ଷା ୧୦୦୦୦୦୦୦୦,୦୦୦୦୦ ସେକେଣ୍ଡ ଶୀଘ୍ର ଦେଖେ, କାରଣ ବାୟୁ ମାଧ୍ୟମଦେଇ ଗତିକରୁଥିବା ଆଲୋକର ବେଗ କାଚ ଭିତର-ଦେଇ ସାମାନ୍ୟ ମନ୍ଥର ଗତିରେ ପ୍ରବେଶ କରେ ।

**କାଗଜର ଜନ୍ମ**

ପ୍ରଥମେ କାଗଜର ଆବିଷ୍କାର ୧୧୦୫ ଖ୍ରୀଷ୍ଟାବ୍ଦରେ ସାହାଲୁଙ୍ଗ ନାମକ ଜଣେ ବ୍ୟକ୍ତି କରିଥିଲେ । ୬୦୦ ବର୍ଷ ପର୍ଯ୍ୟନ୍ତ ଏହି ଆବିଷ୍କାର ଘଟଣା ଚୀନ ଭିତରେ ସୀମିତ ହୋଇ ରହିଲା । ଅବଶ୍ୟ କାଗଜର ପ୍ରଥମ ମିଲ୍ ୧୮୮୯ ଖ୍ରୀଷ୍ଟାବ୍ଦରେ ଜର୍ମାନୀର ଗଉଲଟ ସହରରେ ପ୍ରତିଷ୍ଠା ହେଲା । ଏଥିରୁ କାଗଜର ଜନ୍ମ ଇତିହାସ ଜଣା-ପଡ଼େ ।

**ଏସିଆର ଦୀର୍ଘଜୀବୀ ମନୁଷ୍ୟ**

ଗୋଆଲପଡ଼ା ଜିଲ୍ଲାର (ଆସାମ) କିସାନବରୀ ଗ୍ରାମର ମୁନସି ଉମେନ୍ ଅଲ୍ଲି ଜଣେ ଦୀର୍ଘଜୀବୀ ମାନବ । ତାଙ୍କର ବୟସ ୧୮୨ ବର୍ଷ । ତାଙ୍କ ପରିବାର ମଧ୍ୟରେ କେବଳ ଅଠ ଶହରୁ ଅଧିକ ନାତି ନାତୁଣୀ ଅଛନ୍ତି । ସେ ବେଶ ସୁସ୍ଥ ସବଳ ଅଛନ୍ତି । ଉମେନ ଅଲ୍ଲି ହେଉଛନ୍ତି ଏସିଆର ଦୀର୍ଘଜୀବୀ ମଣିଷ ।

**ଅଟୋ ରିକ୍ସା ଚାଳକଙ୍କ ପି ଏଚ୍. ଡି ଲାଭ**

୧୯୭୧ରେ ଏମ୍ ଏ ପାଶ୍ କରିଥିବା ଜଣେ ଯୁବକ ଶ୍ରୀ ଏନ୍ ଭଗୁପାଲ ଅଟୋ ରିକ୍ସା ଚଳାଉଥିଲେ । ସେ ଏବେ ମହୀଶୂର ବିଶ୍ୱବିଦ୍ୟାଳୟରେ ଡ. ଏନ୍. ଉପାଧ୍ୟାୟଙ୍କ ଅଧୀନରେ ଗବେଷଣା କରି ମହୀଶୂର ବିଶ୍ୱବିଦ୍ୟାଳୟରୁ ପି. ଏଚ୍. ଡ. ପାଇଛନ୍ତି । ତାଙ୍କର ଗବେଷଣାର ବିଷୟବସ୍ତୁ ଥିଲା, 'ଜୈନଦର୍ଶନ ସହିତ ଅନ୍ୟ ଦର୍ଶନର ତୁଳନାତ୍ମକ ବିଚାର । ଆର୍ଥିକ ପରିସ୍ଥିତି ମନୁଷ୍ୟର ସାଧନା ପଥରେ ଯେ ବାଧା ସୃଷ୍ଟିକରି ପାରିବ ନାହିଁ, ଏହା ଏବେ ସେ ପ୍ରମାଣ କରିଦେଇଛନ୍ତି ।

**ବିରାଟ ବୃକ୍ଷ**—ପୃଥିବୀର ଉଷ୍ଣମଣ୍ଡଳୀୟ ଅଞ୍ଚଳରେ 'ବାଓବବ' ନାମକ ଏକ-ପ୍ରକାର ଗଛ ଜନ୍ମେ । ଏହାର ବ୍ୟାସ ୩୦ ଫୁଟ ।

**ଗଛଲତାର ସ୍ମରଣଶକ୍ତି**—ସାଉଦୀ ଆରବର ଜଣେ ଉଦ୍‌ଭିଦ୍ ବିଜ୍ଞାନୀ କହିଛନ୍ତି—ଗଛଲତାମାନଙ୍କର ସ୍ମରଣଶକ୍ତି ଅଛି । କିଙ୍ଗ ସାଉଦ ବିଶ୍ୱବିଦ୍ୟାଳୟର କୃଷିବିଭାଗ ପ୍ରଫେସର ଏକପ୍ରକାର ଫାଇଜଲ ଅଲଯାଦ ଦୀର୍ଘ ଗବେଷଣାକରି କହିଛନ୍ତି ଗଛ-ଗୁଡ଼ଜର ଏକପ୍ରକାର ରସାୟନିକ ପଦାର୍ଥ ମସ୍ତିଷ୍କ ରହିଛି । ଯେଉଁବ୍ୟକ୍ତି ଗଛର କ୍ଷତି ଘଟାଏ ଗଛ ତାକୁ ମନେରଖିପାରେ ଓ ତାକୁ ଦେଖିଲେ ଗଛର ପ୍ରତିକ୍ରିୟା ସୃଷ୍ଟିହୁଏ ।

**କ୍ୟାନସର ବିରୋଧୀ ଔଷଧ ଗଛ**—ଏକ କେନ୍ଦ୍ରୀୟ ଔଷଧ ଅନୁସନ୍ଧାନ ସଂସ୍ଥାନ, ଲକ୍ଷ୍ନୌର ଡାକ୍ତର ନିତ୍ୟାନନ୍ଦ ଓ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ଡ. ଏମ. ଏଲ ଧର ଏବଂ ଆର ଏନ ଷ୍ଟେପତା ଏ ପର୍ଯ୍ୟନ୍ତ ପ୍ରାୟ ୫ଟି ଗଛରେ କ୍ୟାନସର ନିରୋଧୀ ଗୁଣ ଆବିଷ୍କାର କରିଛନ୍ତି । ଏଥି ମଧ୍ୟରୁ ଋରେଟି ଗଛ ବିଶେଷ ମହତ୍ତ୍ୱପୂର୍ଣ୍ଣ ୧ ରନେଜୋତ (ଜିନିଫୋଲିଆ), ୨-ବୁଲ୍ଲାର ବିଛର (କାବୁଲସ ପେଣ୍ଡୁଲମ), ୩ ଜଙ୍ଗଲୀ ତମାଖୁ (ନିକୋଟିୟାନା ଲମ୍ବ ଜନିଫୋଲିୟା, ୪ ଗଦର ତମାଖୁ (ସେଲପିୟା କୋରେ ମେଣ୍ଟୋଲିନା) ବୃକ୍ଷ ନିମନ୍ତେ ପ୍ରାଣଦାନ—ଭରତରର ବୃକ୍ଷର ରକ୍ଷା ନିମନ୍ତେ ବଳିଦାନର ପରମ୍ପର ନୂତନ ନୁହେଁ । ଅଢେଇ ଶହ ବର୍ଷ ପୂର୍ବେ ଯୋଧପୁର ଖେଦରଡି ଗ୍ରାମରେ ସରକାର ମଜୁର ଗଛ କାଟିବା ନିମନ୍ତେ ଆଦେଶ ଦେଲେ । କିନ୍ତୁ ସେହି ଗ୍ରାମର ଅମୃତ ଦେବୀଙ୍କର ନେତୃତ୍ୱରେ ୩୬୩ ସ୍ତ୍ରୀ ପୁରୁଷ ପ୍ରତିବାଦ କରି ଗଛ ଦେହରେ ଲାଗି ରହି ସୈନିକମାନଙ୍କ ତରବାରିରେ ପ୍ରାଣ ଦେଲେ ।

**ସିରମିକ ଅସ୍ଥି**

କେତେଜଣ ଅଷ୍ଟ୍ରେଲିୟ ଗବେଷଣାକାରୀଙ୍କ ଠାରୁ ପ୍ରକାଶ ଯେ, ସେମାନେ ଏକପ୍ରକାର ସିରମିକ ଅସ୍ଥି ପ୍ରସ୍ତୁତ କରିଛନ୍ତି ଯାହାକୁ କୌଣସି ଆଘାତଦ୍ୱାର ବା ରୋଗ ପ୍ରକୋପରୁ ନଷ୍ଟ ହୋଇଯାଉଥିବା ମନୁଷ୍ୟ ହାଡର ସ୍ଥାନରେ ଖଞ୍ଜାଯାଇ ପାରିବ । ଏହା ଶରୀରରେ ନୂତନ ହାଡ ସୃଷ୍ଟି କରିବାରେ ମଧ୍ୟ ସାହାଯ୍ୟ କରିପାରିବ ।

ମନୁଷ୍ୟ ଶରୀରରେ ମନୁଷ୍ୟ ହାଡ଼ ବା ପଶୁ ହାଡ ଖଞ୍ଜା ଯାଉଥିବାର ସାଂପ୍ରତିକ ପଦ୍ଧତି ପରିବର୍ତ୍ତେ ଉକ୍ତ ସିରମିକ ଅସ୍ଥି ବ୍ୟବହାର କରଯାଇ ପାରିବ । ଏହାର ସଫଳତା ସଂପର୍କରେ ଅଷ୍ଟ୍ରେଲିଆର ପାର୍ଲିଆମେଣ୍ଟକୁ ଜଣାଇ ଦିଆଯାଇଛି । ଉକ୍ତ ଗବେଷଣାକାରୀ ମାନେ ମଧ୍ୟ ଗୋଟିଏ ରୋଗୀର ଅସ୍ଥି ମଜ୍ଜାର କୋଷକୁ ନେଇ ଏକପ୍ରକାର ସିନ୍ଥେଟିକ୍ ଅସ୍ଥି ପ୍ରସ୍ତୁତ କରିବାକୁ ଉଦ୍ୟମ ଚଳାଇଛନ୍ତି । ଏହି ଅସ୍ଥି ମଧ୍ୟ ଶରୀର ମଧ୍ୟରେ ପ୍ରାକୃତିକ ହାଡ଼ ସୃଷ୍ଟି କରିବାରେ ସାହାଯ୍ୟ କରିପାରିବ ।

**ପୃଥିବୀର ଘୂର୍ଣ୍ଣନ**

ପୃଥିବୀକୁ ନିଜ ଅକ୍ଷର ଚାରିପାଖରେ ଗୋଟିଏଥର ଘୂରିଆସିବାପାଇଁ ୨୩ ଘଣ୍ଟା, ୫୬ ମିନିଟ୍ ଓ ୪୦.୯ ସେକେଣ୍ଡ ଲାଗିଥାଏ ।

**ପୃଥିବୀର ଦୀର୍ଘତମ ସୁଡଙ୍ଗ**

ଲଣ୍ଡନର ପୂର୍ବ ଫିଞ୍ଚଲେ ଓ ମରଡନକୁ ସଂଯୁକ୍ତ କରୁଥିବା ସୁଡଙ୍ଗ ପୃଥିବୀର ଦୀର୍ଘତମ ସୁଡଙ୍ଗ । ଏହାର ଦୈର୍ଘ୍ୟ ୧୭ ମାଇଲ ।

**ଗଭୀରତମ ସମୁଦ୍ର**

ପୃଥିବୀର ସମୁଦ୍ରମାନଙ୍କ ମଧ୍ୟରେ କାରିବିୟାନ ସମୁଦ୍ର ଗଭୀରତମ ।

**ଦକ୍ଷିଣ ଆଫ୍ରିକାରେ ସୁନା**

ପୃଥିବୀରେ ଉତ୍ପାଦିତ ହେଉଥିବା ମୋଟ ସୁନା ମଧ୍ୟରୁ ଦକ୍ଷିଣ ଆଫ୍ରିକା ଗଣତନ୍ତ୍ର ୫୮ ପ୍ରତିଶତ ସୁନା ଉତ୍ପାଦନ କରେ ।

**ସୈନିକ ଉପକରଣ ଖର୍ଚ୍ଚ**

୩୬ଟି ଦରିଦ୍ର ଦେଶରେ ବାସକରୁଥିବା ୧୮୦୦ ନିୟୁତ ବ୍ୟକ୍ତିଙ୍କର ଦୈନିକ ଆୟ ୧୦୦୦ ନିୟୁତ ଡଲାର । ସୈନିକ ଉପକରଣ ଉତ୍ପାଦନରେ ପୃଥିବୀରେ ପ୍ରତିଦିନ ୧୦୦୦ ନିୟୁତ ଡଲାର ଖର୍ଚ୍ଚହୁଏ ।

**ଓ୍ୟାକୋଣ୍ଡା ନିର୍ଝର**

ଆମେରିକାର କାନସାସ୍ଥିତ ୱାକୋଣ୍ଡା ନିର୍ଝର ମହାସାଗରଠାରୁ ୬୦୦ ମାଇଲ ଦୂରରେ ଅବସ୍ଥିତ, କିନ୍ତୁ ମହାସାଗରର ଲହରୀ ଯେତିକି ଉଚ୍ଚକୁ ଉଠେ ଏ ନିର୍ଝରର ଲହରୀ ଠିକ୍ ସେତିକି ଉଚ୍ଚକୁ ଉଠିଥାଏ ।

**ଗୋଟିଏ ଶବ୍ଦରେ ଭାଷା**

ଦକ୍ଷିଣ ଆମେରିକାସ୍ଥିତ ପେରୁର ଇଂକେଇଂକେମାନେ ଗୋଟିଏ ଶବ୍ଦକୁ ବିଭିନ୍ନ ଉଚ୍ଚାରଣ ଓ ସ୍ୱରଭଙ୍ଗୀଦ୍ୱାରା ବ୍ୟକ୍ତକରି ନିଜର ଭାବ ପ୍ରକାଶ କରିଥାଆନ୍ତି । ଏମାନଙ୍କର ଭାଷା ଏହି ଗୋଟିଏ ଶବ୍ଦ 'ଇଂକେ' ମଧ୍ୟରେ ସୀମାବଦ୍ଧ ।

**ବ୍ଲାକ୍ ବକ୍ସ**

ବ୍ଲାକ ବକ୍ସ ଗୋଟିଏ ଇଲେକ୍ଟ୍ରିକ ଗାଡ଼ଗେଟ । ଏହା ବିମାନ ଉଡ୍ଡୟନ

ଆରମ୍ଭରୁ ଅବତରଣ ପର୍ଯ୍ୟନ୍ତ ବିମାନର ପଥ, ବେଗ, ଉଡ୍‌ଡୟନର ଉଚ୍ଚତା ଓ ଚାପ ପ୍ରଭୃତିର ମାପରଖେ ।

**ଡାକ ଟିକେଟ୍**

ଜେମ୍‌ସ ଚାଲମର ନାମକ ସ୍କଟଲ୍ୟାଣ୍ଡର ଜଣେ ପୁସ୍ତକ ବିକ୍ରେତା ଆଧେସିଭ ପୋଷ୍ଟେଜ ଷ୍ଟାମ୍ପ ଆବିଷ୍କାର କରିଥିଲେ । ଏହା ଆଜିପର୍ଯ୍ୟନ୍ତ ବ୍ୟବହୃତ ହେଉଛି ।

**ଚିଲା'କରି କଥାକୁହ**

କେତେକ ମନୋବିଜ୍ଞାନୀଙ୍କ ମତରେ ବିଶ୍ୱର ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ପ୍ରତିଦିନ ହାରାହାରି ୭୦୦ଥର କଥାବାର୍ତ୍ତା କରିଥାଆନ୍ତି । ଏହି କଥାବାର୍ତ୍ତା ସମୟରେ ଜଣେ ଗଡ଼ପଡ଼ ବ୍ୟକ୍ତି ୧୬,୦୦୦ ବାକ୍ୟ ଓ ୧୦୦,୦୦୦ ଶବ୍ଦ ବ୍ୟବହାର କରିଥାଆନ୍ତି ।

**ଫିଫ୍‌ଥ କଲମ**

ସ୍ପେନରେ ଗୃହଯୁଦ୍ଧ ସମୟରେ ଜେନେରଲ ଏମିଲି ଓ ମୋଲା ଚାରି କଲମ ଜାତୀୟ ବିଦ୍ରୋହୀଙ୍କ ସହିତ ମାଦ୍ରିଡ ଦିଗକୁ ଅଗ୍ରସର ହେଉଥିଲେ । ସେ କହିଥିଲେ ପଞ୍ଚମ କଲମ ଅର୍ଥାତ ମାଦ୍ରିଡରେ ରହିଥିବା ଲୋକେ ତାଙ୍କୁ ସାହାଯ୍ୟ କରିବେ । ସେହିଦିନଠାରୁ 'ଫିଫ୍‌ଥ କଲମ' ବା ପଞ୍ଚମ ବାହିନୀ ଶବ୍ଦ ଲୋକପ୍ରିୟ ହୋଇ-ଉଠିଲା ।

**ବାର୍ଦ୍ଧକ୍ୟ ସ୍କୁଲ**

ଡର୍ଟମୁଣ୍ଡର ରୁର ଟିଚର୍‌ସ ଟ୍ରେନିଙ୍ଗ କଲେଜ (ପଶ୍ଚିମ ଜର୍ମାନୀ) ବୁଢ଼ ବୁଢ଼ୀମାନଙ୍କୁ ବାର୍ଦ୍ଧକ୍ୟରେ ମାନସିକ ଶକ୍ତି ଅକ୍ଷୁନ୍ନ ରଖିବାପାଇଁ ଶିକ୍ଷାଦିଏ । ଏ କଲେଜର ଛାତ୍ର—ଛାତ୍ରୀସଂଖ୍ୟା—୧୫୬ । ସେମାନଙ୍କର ବୟସ ୬୦ରୁ ୮୦ ବର୍ଷ ।

**ଆମେରିକାନ ନିଗ୍ରୋଙ୍କର ରେକର୍ଡ**

୧୯୩୫ ମସିହା ମେ ମାସ ୨୫ ତାରିଖରେ ଆମେରିକାନ ନିଗ୍ରୋ ଖେଳାଳି ଜେସି ଓୟେନ୍‌ସ ମିଚିଗାନର ଆନଆର୍ବରରେ ଚାରିଟି ଖେଳରେ ପ୍ରତିଯୋଗିତା କରିଥିଲେ । ସେ ଏ ଚାରିଟିଯାକ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କଲେ । ସେହି ପ୍ରତିଯୋଗିତା ରୁଡ଼କ ହେଲା—୧୦୦ ଗଜ ଦୌଡ଼, ୨୨୦ ଗଜ ଦୌଡ଼, ୨୨୦ ଗଜ

ଜେଦର୍ଡଲସ ଓ ଲମ୍ବ ଡ଼ିଅଁ । ସେ ଏ ସମସ୍ତ ପ୍ରତିଯୋଗିତାରେ ନୂତନ ବିଶ୍ୱରେକର୍ଡ ସ୍ଥାପନ କରିଥିଲେ । ପରେ ୧୯୩୬ ମସିହାରେ ବର୍ଲିନରେ ଅନୁଷ୍ଠିତ ଅଲିମ୍ପିକ ଖେଳରେ ସେ ପୁଣି ଚାରିଟି ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଏହାପୂର୍ବରୁ ଜର୍ମାନ ଡ଼ିକ୍ଟେଟର ହିଟଲର ଭବିଷ୍ୟତ ବାଣୀ କରିଥିଲେ—"କୌଣସି କୃଷ୍ଣକାୟ ଜର୍ମାନମାନଙ୍କୁ ପରାଜିତକରି ପାରିବେନାହିଁ ।

**ଶ୍ୟାମ ଦେଶର ଯମଜ**

ଏଙ୍ଗ ଓ ଚେଙ୍ଗ ନାମକ ଯମଜ (୧୮୧୧—୧୮୭୪) ଶ୍ୟାମ ଦେଶରେ ଜନ୍ମଗ୍ରହଣ କରିଥିଲେ । ସେମାନଙ୍କର ପିଠ ଯୋଡ଼ିହୋଇଥିଲା ।

**ଭଏଜର—୧**

ଭଏଜର—୧, ୮୦୦ କେ. ଜି ଓଜନର ମନୁଷ୍ୟ ବିହୀନ ମହାକାଶ ଯାନ । ଏହା ୧୯୭୯ ମସିହା ମାର୍ଚ୍ଚ ୭ ତାରିଖରେ ଜୁପିଟରର ନିକଟତମ ଅଞ୍ଚଳକୁ ଯାଇଥିଲା । ଏଥିନିମନ୍ତେ ପୃଥିବୀରୁ ତାକୁ ୬୪୦ ନିୟୁତ କିଲୋମିଟାର ଦୀର୍ଘଯାତ୍ରା କରିବାକୁ ପଡ଼ିଥିଲା । ଭଏଜର-୧ ଜୁପିଟର ଚାରିପାଖରେ ଏକ ବଳୟ ଆବିଷ୍କାର କରିଥିଲା । ବୈଜ୍ଞାନିକମାନଙ୍କ ମତରେ ବଡ ବଡ଼ ଖଣ୍ଡଦ୍ୱାରା ଏ ବଳୟ ନିର୍ମିତ । ଏହା ଜୁପିଟରର ଚାରିପାଖରେ ଥରେ ବୁଲିଆସିବାପାଇଁ ସାତଘଣ୍ଟା ସମୟ ନିଏ । ଏହି ବଳୟର ଘନତା ୩୦ କିଲୋମିଟାରରୁ କମ ଓ ଏହା ହଜାର ହଜାର କିଲୋମିଟର ଚଉଡ଼ା ।

**ମହାନ ଭାଷାବିତ୍**

ଫ୍ରାନ୍ସର ଜର୍ଜେସ ସ୍କିମିଟ ପୃଥିବୀର ସର୍ବଶ୍ରେଷ୍ଠ ଭାଷାବିଦ । ସେ ଏବେ ନ୍ୟୁୟର୍କସ୍ଥିତ ଜାତିସଂଘର ଅନୁବାଦ ବିଭାଗରେ କାମ କରୁଛନ୍ତି । ସେ ନିର୍ଭୁଲ ଭାବରେ ୩୦ଟି ଭାଷାରେ କଥାବାର୍ତ୍ତା କରିପାରନ୍ତି ଓ ୬୦ ଭାଷାରେ ଅନୁବାଦ କରିପାରନ୍ତି ।

**ସ୍ୱାସ୍ଥ୍ୟବାନ ହେବାପାଇଁ ଖର୍ଚ୍ଚ**

ଆମେରିକାରେ ସ୍ୱାସ୍ଥ୍ୟବାନ ହେବାପାଇଁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼େ । ସାଧାରଣ ହସପିଟାଲରେ ଅସ୍ତ୍ରୋପଚାର ନିମନ୍ତେ ଜଣେ ଆମେରିକାନଙ୍କୁ ୮୦ ୦୦୦ ଟଙ୍କା ବ୍ୟୟ କରିବାକୁ ପଡ଼େ ।

**ଲିଙ୍କନ ଓ ସଂଖ୍ୟା—୭**

ଲିଙ୍କନ ଆମେରିକା ଷୋଡ଼ଶ ରାଷ୍ଟ୍ରପତି । ଲିଙ୍କନ ନାମଟି (Lincoln) ସାତଟି

ଅକ୍ଷରରେ ଗଠିତ । ୧୮୪୭ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସ ୭ ତାରିଖରେ ସେ ଆମେରିକାନ କଂଗ୍ରେସର ସଦସ୍ୟ ରୂପେ ଶପଥ ଗ୍ରହଣ କରିଥିଲେ । ସେ ଷ୍ଟିଫେନ ଡଗଲାସଙ୍କୁ ୭ ଥର ଡ଼ିବେଟ କରିଥିଲେ । ସେ ଦାସପ୍ରଥା (slavery—୭ଟି ଅକ୍ଷର) ବିରୁଦ୍ଧରେ ସଂଗ୍ରାମ କରିଥିଲେ । ସେ ରାଜ୍ୟ ବିଧାୟକ ରୂପେ ୭ ବର୍ଷ ରହିଥିଲେ । ସେ ଯେତେବେଳେ ରାଷ୍ଟ୍ରପତି ହେଲେ ସେ ୭ ଜଣ ମନ୍ତ୍ରୀ ନିଯୁକ୍ତ କରି-ଥିଲେ ।

## ସୁନା ଉତ୍ପାଦନ

ଗତ ୫୦୦ ବର୍ଷ ମଧ୍ୟରେ ପୃଥିବୀରେ ୫୦,୦୦୦ ଟନ ସୁନା ଖଣିରୁ ଉତ୍ପାଦନ କରଯାଇ ପାରିଛି ।

## ଦରିଦ୍ର ରାଜ୍ୟ

ଭାରତର ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶାରେ ସର୍ବାଧିକ ଦରିଦ୍ରବ୍ୟକ୍ତି ଅଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଗ୍ରାମାଞ୍ଚଳରେ ବାସ କରନ୍ତି । ଓଡ଼ିଶାର ୭୧,୦୧ ପ୍ରତିଶତ ବ୍ୟକ୍ତି ଦାରିଦ୍ର୍ୟର ସୀମାରେଖା ତଳେ ବାସ କରନ୍ତି ।

## ନୋବେଲ ପୁରସ୍କାର ମୂଲ୍ୟ ବୃଦ୍ଧି

ନୋବେଲ ପୁରସ୍କାରର ମୂଲ୍ୟ ବୃଦ୍ଧି କରଯାଇଛି । ନୋବେଲ ପୁରସ୍କାରର ବର୍ତ୍ତମାନ ମୂଲ୍ୟ—୨୧୦, ୦୦୦ ପାଉଣ୍ଡ । ପୂର୍ବାପେକ୍ଷା ଏ ମୂଲ୍ୟ ଦଶ ପ୍ରତିଶତ ବୃଦ୍ଧି କରଯାଇଛି ।

## ପୋଷ୍ଟରର ସର୍ବାଧିକ ମୂଲ୍ୟ

ଫ୍ରାନ୍ସର ବିଖ୍ୟାତ ଚିତ୍ରକାର ହେନେରୀ ଡ଼. ଟୋଲୋଜଙ୍କର ବିଶ୍ୱପ୍ରସିଦ୍ଧ ପୋଷ୍ଟର ମାଓଲିନ ରେଜ୍ । ନିଉୟର୍କରେ ୫୫୦୦୦ ଡଲାର ମୂଲ୍ୟରେ ନିଲାମ କର-ଯାଇଥିଲା । ଏପର୍ଯ୍ୟନ୍ତ ଅନ୍ୟ କୌଣସି ପୋଷ୍ଟରପାଇଁ ଏତେ ଅଧିକ ମୂଲ୍ୟ ଦିଆଯାଇ ନାହିଁ । ଏ ପୋଷ୍ଟରରେ ଫ୍ରାନ୍ସର ପ୍ରସିଦ୍ଧ ନାଇଟକ୍ଲବ ମାଓଲିନ ରେଗରେ ଜଣେ ମହିଳା ନୃତ୍ୟ କରିବାର ଦର୍ଶାଯାଇଛି ।

## ସୁନା ଓ ଲୁଣ

୧୮୫୨ ମସିହାରେ ଆମେରିକାର ଓରେଗନରେ ସୁନା ଓ ଲୁଣର ମୂଲ୍ୟ ସମାନ ଥିଲା ।

### ସି୍ଭର ନିଦ

ସି୍ଭ ଏକ ଅଦ୍ଭୁତ ପ୍ରାଣୀ । ଏହା ପ୍ରାୟ ଦେଖିବାକୁ ମୂଷାଭଳି । ଏହାର ଲାଞ୍ଜରେ ପର ଅଛି । ଏମାନେ ମାଲେସିୟାରେ ଦେଖିବାକୁ ମିଳନ୍ତି । ଫିଲିପାଇନ୍ସ ଚୀନ ଓ ଭାରତରେ ମଧ୍ୟ ସି୍ଭ ଦେଖାଯାଆନ୍ତି । ସର୍ବପ୍ରାଚୀନ ସି୍ଭ ୭୫ ନିୟୁତ ବର୍ଷ-ପୂର୍ବେ ଭାରତରେ ବାସ କରୁଥିଲା । ଏ ପ୍ରାଣୀର ଆଖି ମୁହଁର ଦୁଇ ପାଖରେ ଥାଏ । ଗଛ ଡାଳରେ ଭାରସାମ୍ୟ ରକ୍ଷା ନିମନ୍ତେ ସି୍ଭର ଲାଞ୍ଜ ତାକୁ ସାହାଯ୍ୟ କରେ । ସି୍ଭ ନିଦରେ ଶୋଇରୁହେ, ରାତିରେ ଖାଦ୍ୟ ସଂଗ୍ରହ କରିବା ନିମନ୍ତେ ବାହାରିପଡେ । ସି୍ଭ କୀଟପତଙ୍ଗ ଖାଏ ଓ ବୁଦା ଏବଂ ଗଛର ତଳ ଡାଳରେ ବାସକରେ । ସେ ଆଘ୍ରାଣ ଦ୍ୱାରା ନିଜର ଖାଦ୍ୟ ଚିହ୍ନିପାରେ ।

### ୧୪ ନିୟୁତ ବର୍ଷ ପ୍ରାଚୀନ ଗଛ

ଇଉ ଏସ-ଏ-ର ୱାଶିଂଟନ ଠାରେ ୧୪ ନିୟୁତ ବର୍ଷ ପ୍ରାଚୀନ ବୃକ୍ଷର ଅବଶେଷ ମିଳିଛି । ବୈଜ୍ଞାନିକମାନଙ୍କ ମତରେ ଏ ଗଛଗୁଡ଼ିକ ଉଷ୍ଣ ଲାଭାସ୍ରୋତ ତଳେ ପୋତିହୋଇ ପଡ଼ିଥିଲା ।

### ଫଳରେ ଚିନି ଅଂଶ

କାଗଜି ଲେମ୍ବୁରେ ୯.୮, ସପୁରୀ, ପିଚ, ଷ୍ଟ୍ରବେରୀ ଓ ତରଭୁଜରେ ୯.୭, ୯.୪, ୭.୪, ଓ ୬ ୭ ପ୍ରତିଶତ ଚିନିଅଂଶ ଅଛି ।

### ପାନ

ପୃଥିବୀର ପ୍ରାୟ ଦଶ ପ୍ରତିଶତ ଲୋକ ପାନ ଖାଆନ୍ତି । ପାନ ଖାଇବା ଖ୍ରୀଷ୍ଟପୂର୍ବ ୫୦୦ରେ ଆରମ୍ଭ ହୋଇଛି ।

### ଘୂର୍ଣ୍ଣିବାତ୍ୟାରେ ସର୍ବାଧିକ ମୃତ୍ୟୁ

୧୯୬୩ ମସିହାରେ ଆମେରିକାରେ ଘଟିଥିବା ଘୂର୍ଣ୍ଣିବାତ୍ୟାରେ ୬୦୦୦ ବ୍ୟକ୍ତି ପ୍ରାଣ ହରାଇଥିଲେ ଓ ୭୫ ଲକ୍ଷ ବ୍ୟକ୍ତି ଗୃହଶୂନ୍ୟ ହୋଇଥିଲେ ।

### ପ୍ରୋମେଥିୟମ

ପ୍ରୋମେଥିୟମ, ଆଣବିକ ଫ୍ୟୁଜନରୁ ଜାତ ଏକ ଦ୍ରବ୍ୟ । ଏକ ଆଉନ୍ସ ପ୍ରୋମେଥିୟମର ମୂଲ୍ୟ ୧୨ ବିଲିୟନ ପାଉଣ୍ଡ ।

**ଜନ୍ମହାର**

ବର୍ତ୍ତମାନ ପୃଥିବୀର ଦରିଦ୍ର ଲୋକସଂଖ୍ୟା ୨୬୦୦ ନିୟୁତ । ପ୍ରତିବର୍ଷ ୬୨ ୬ ନିୟୁତ ଶିଶୁ ଜନ୍ମଗ୍ରହଣ କରୁଛନ୍ତି । ବର୍ଷକୁ ଜନସଂଖ୍ୟା ବୃଦ୍ଧିହାର ହେଲା—୨ ୬ ପ୍ରତିଶତ, କିନ୍ତୁ ୧,୧୦୦ ନିୟୁତ ଧନୀ ବ୍ୟକ୍ତି ପୃଥିବୀରେ ବାସ କରନ୍ତି । ସେମାନଙ୍କ ମଧ୍ୟରେ ଜନସଂଖ୍ୟା ବୃଦ୍ଧିର ହାର ହେଲା—୧.୧ ପ୍ରତିଶତ, ଅର୍ଥାତ ପ୍ରତିବର୍ଷ ୧୨.୧ ନିୟୁତ ବ୍ୟକ୍ତି ଧନୀ ସମ୍ପ୍ରଦାୟରେ ବୃଦ୍ଧି ପାଉଛନ୍ତି ।

**ପ୍ରତିବର୍ଷ ୩୫ ଲକ୍ଷ ଚାକିରି**

ଭାରତରେ ପ୍ରତିଦିନ ୩୩୦୦୦ ଶିଶୁ ଜନ୍ମଗ୍ରହଣ କରୁଛନ୍ତି । ଏମାନଙ୍କ ନିମନ୍ତେ ପ୍ରତିବର୍ଷ ୩୫ ଲକ୍ଷ ଚାକିରି ସୃଷ୍ଟି ଓ ୨୨ ଲକ୍ଷ ଗୃହ ନିର୍ମାଣ ଆବଶ୍ୟକ ।

**ତୀରଦ୍ୱାରା ମାଛ ଶିକାର**

ନିଉ ଗାଏନାର ଉପକୂଳରେ ଅଧିବାସୀମାନେ ଏବେମଧ୍ୟ ଧନୁ ତୀରଦ୍ୱାରା ମାଛ ଶିକାର କରନ୍ତି । ତୀର ଦେହରେ ଖଣ୍ଡିଏ ସୂତା ଲାଗିଥାଏ । ଏଣୁ ତୀରଟିକୁ ପୁଣି ଉଦ୍ଧାର କରିବା ସହଜ ହୁଏ ।

**ଖଟା ମହୁ**

ବ୍ରାଜିଲର ଗୋୟାଜ ରାଜ୍ୟରେ ଏକପ୍ରକାର ମହୁମାଛି ଅଛନ୍ତି । ଏମାନେ କାମୁଡନ୍ତି ନାହିଁ ; କିନ୍ତୁ ଏମାନଙ୍କର ମହୁ ଖଟା ।

**ମୂଲ୍ୟବାନ ପଦ**

୧୮୬୭ ଖ୍ରୀଷ୍ଟାବ୍ଦରେ ଇଜିପ୍ଟର ରାଜପ୍ରତିନିଧି ପ୍ରଥମ ଇସମାଇଲ 'ଖେଦାଇଭ' ନାମକ ଏକ ସମ୍ମାନଜନକ ପଦ ଲାଭ ନିମନ୍ତେ ତୁର୍କୀର ପ୍ରଧାନ ମନ୍ତ୍ରୀ ଫୁଆଦ ପାଶାଙ୍କୁ ୩୦୦,୦୦୦ ପାଉଣ୍ଡ ଲାଞ୍ଚ ଦେଇଥିଲେ । ସେତେବେଳେ ଇଜିପ୍ଟ ତୁର୍କୀ ଅଧୀନରେ ଥିଲା ।

**ଫନିବୋ'ନ**

ମଣିଷ ଶରୀରରେ ଥିବା 'ଫନିବୋନ' ପ୍ରକୃତରେ ଅସ୍ଥି ନୁହେଁ । ଏହା ଏକ ସ୍ନାୟୁ ।

**ଅନ୍ଧକାରରେ ଫଟୋଗ୍ରାଫ**

ରୁଷର ବୈଜ୍ଞାନିକମାନେ ପୂର୍ଣ୍ଣ ଅନ୍ଧକାର ଭିତରେ ଫଟୋ ଉତ୍ତୋଳନ କରିବାର କୌଶଳ ଅବିଷ୍କାର କରିଛନ୍ତି । ଠିନିଯ୍ରାୟ ଫଟୋଗ୍ରାଫିକ ପ୍ଲେଟ୍‌ର ଧାତୁ ତଳ

ନିଜର ଆଲୋକ ବିରୁଦ୍ଧରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରେନାହିଁ ; କିନ୍ତୁ ବିଦ୍ୟୁତ କ୍ଷେତ୍ରରେ ସକ୍ରିୟ ହେବାମାତ୍ରେ ଏହା ଆଲୋକପ୍ରବଣ ହୋଇଉଠେ ।

**ମାଛର ମୂର୍ଚ୍ଛାବେଗ**

ସ୍ନିପର ନାମକ ଏକ ଜାତୀୟ ମାଛ, ପାଣି ବିକ୍ଷୁବ୍ଧ ହେବାମାତ୍ରେ ମୂର୍ଚ୍ଛା ହୋଇଯାଏ ।

**ଲତା ମୁଙ୍ଗେସକରଙ୍କର ଗୀତ**

ଲତା ମୁଙ୍ଗେସକର ପୃଥିବୀର ପ୍ରସିଦ୍ଧ ଓ ଭାରତର ଅସାଧାରଣ ଗାୟିକା । ଏ ପର୍ଯ୍ୟନ୍ତ ତାଙ୍କର ୨୫୦୦ ଗୀତ ରେକର୍ଡ କରାଯାଇ ସାରିଲାଣି ।

**ଜନସଂଖ୍ୟା ବୃଦ୍ଧି ନାହିଁ**

ପଶ୍ଚିମ ଜର୍ମାନୀର ଜନସଂଖ୍ୟାର ଆଦୌ ବୃଦ୍ଧି ହେଉନାହିଁ । ପଶ୍ଚିମ ଜର୍ମାନୀର ବାର୍ଷିକ ଜନ୍ମହାର ୦ ୦ ।

**ଭାରତରେ ବିଦ୍ୟୁତଚାଳିତ ରେଳପଥ**

୧୯୨୫ ମସିହା ଫେବୃୟାରୀ ୫ ତାରିଖରେ ଭାରତରେ ପ୍ରଥମ ବିଦ୍ୟୁତ ଚାଳିତ ରେଳପଥ କାର୍ଯ୍ୟକାରୀ ହେଲା । ଏ ରେଳପଥ ବମ୍ବେର ଭିକ୍ଟୋରିୟା ଟର୍ମିନସ ଠାରୁ କୁରଲା ପର୍ଯ୍ୟନ୍ତ ଲମ୍ବିଯାଇଛି ।

**ଟଙ୍କା ତିଆରି**

୧୫୪୨ ଖ୍ରୀଷ୍ଟାବ୍ଦରେ ଭାରତରେ ସର୍ବପ୍ରଥମେ ଟଙ୍କା ତିଆରି ହେଲା । ସେତେବେଳେ ଟଙ୍କା ରୂପାରେ ତିଆରି ହେଉଥିଲା ଓ ଏହାର ଓଜନ ଥିଲା ୧୭୯ ଗ୍ରାମ । ସେରଶାହଙ୍କ ସମୟରେ ଟଙ୍କା ତିଆରି ଆରମ୍ଭ ହୋଇଥିଲା ।

**ଭାରତୀୟ ଷ୍ଟାଣ୍ଡାର୍ଡ ଟାଇମ**

ଭାରତୀୟ ଷ୍ଟାଣ୍ଡାର୍ଡ ଟାଇମ ଗ୍ରୀନ ଉଇଚ ସମୟ ଠାରୁ ୫୲ ଘଣ୍ଟା ଅଗ୍ରଗାମୀ ।

**ବଲ ପଏଣ୍ଟ ପେନ୍**

ଜନ ଲାଉଡ ବଲ ପଏଣ୍ଟ ପେନ୍ ଆବିଷ୍କାର କରିଥିଲେ ।

**ସାଇକ୍ରୋଜେନିକ୍ସ**

ଅତ୍ୟନ୍ତ ନିମ୍ନ ଉତ୍ତାପ ସମ୍ବନ୍ଧତ ବିଜ୍ଞାନକୁ ସାଇକ୍ରୋଜେନିକ୍ସ କୁହାଯାଏ ।

**ଡାୟନାମୋ ମିଟର**

ବିଦ୍ୟୁତ ଶକ୍ତି ପରିମାପକ ଯନ୍ତ୍ରକୁ ଡାୟନାମୋ ମିଟାର କୁହାଯାଏ ।

**ଗ୍ରାନାଇଟ୍ ସିଟି**

ସ୍କଟଲ୍ୟାଣ୍ଡସ୍ଥିତ ଆବେରଡ଼ିନକୁ ଗ୍ରାନାଇଟ୍ ସିଟି କୁହାଯାଏ ।

**ବିଶ୍ୱର ଶୁଷ୍କତମ ସ୍ଥାନ**

ଦକ୍ଷିଣ ଆମେରିକାସ୍ଥିତ ଚିଲୀର ଆଟକାମା ମରୁଭୂମି ପୃଥିବୀର ଶୁଷ୍କତମ ସ୍ଥାନ ।

**ମନ୍ଥରଗାମୀ ଜନ୍ତୁ**

ଗେଣ୍ଡାର ଗତି ପୃଥିବୀରେ ସବୁ ପ୍ରାଣୀମାନଙ୍କ ମଧ୍ୟରେ ମନ୍ଥର । ଗେଣ୍ଡା ପ୍ରତି ଘଣ୍ଟାରେ ୦.୦.୩ ମାଇଲ ପଥ ଅତିକ୍ରମ କରିପାରେ ।

**ନାସ ବଂଶୀ**

ଦକ୍ଷିଣ ପୂର୍ବ ଏସିୟାସ୍ଥିତ ଫିଲିପାଇନ୍ସ ଦ୍ୱୀପରେ ଲୁଜନର ଅଧିବାସୀମାନେ ନାକରେ ବଂଶୀ ବଜାନ୍ତି ।

**ବୃହତ୍ତମ ଫୁଲ**

ଜାଭାରେ ଫୁଟୁଥିବା 'ରଫ୍ଲେସିୟା' ପୃଥିବୀର ବୃହତ୍ତମ ଫୁଲ । ଏ ଫୁଲ ମାଂସଳ । ଏହାର ରଙ୍ଗ ଲାଲ ଛିଟ । ଏହାର ବ୍ୟାସ ୧.୫ ମିଟାର ।

**ହୁଇପୁର ଉଇଲ**

ହୁଇପୁର ଉଇଲ ଏକ ଆମେରିକୀୟ ପକ୍ଷୀ ।

**ପ୍ରଥମ ମହିଳାଙ୍କର ଦୌଡ଼**

ଡାଇନା ସୁସାନ ଲେଥର ପାଞ୍ଚ ମିନିଟରେ ଏକ ମାଇଲ ଦୌଡ ପୂର୍ଣ୍ଣ କରିବାରେ ପ୍ରଥମ ମହିଳା ।

**ନ୍ୟୁୟର୍କ ସହରର କ୍ଷେତ୍ରଫଳ**

ନ୍ୟୁୟର୍କ ସିଟିର କ୍ଷେତ୍ରଫଳ ୮୩୦ ବର୍ଗ କିଲୋମିଟାର । ଏହା ଗ୍ରେଟର ବମ୍ବେର ଦୁଇଗୁଣ ।

**ମହିଳା ଆଡମିରାଲ**

ଗ୍ରୀସର ଲସକାରିନା ବୋଉବୋଉଲିନା ଥିଲେ ମହିଳା ଆଡମିରଲ । ୧୮୨୧ରୁ ୧୮୨୫ ମସିହା ମଧ୍ୟରେ ତୁର୍କୀ ସହିତ ସ୍ୱାଧୀନତା ଯୁଦ୍ଧରେ ସେ ନିଜର ଯୁଦ୍ଧ ଜାହାଜ ଭେଜାକୁ ପରିଚାଳିତ କରିଥିଲେ ।

**ରକେଟ ଓ ରୁଷ**

୧୯୦୩ ମସିହାରେ ରୁଷର ପାୟୋନିର କେ-ଆର-ତ୍ସିଓଲକୋ ଭସ୍କି ଆନ୍ତର୍ଗ୍ରହ ଯାତ୍ରାପାଇଁ ରକେଟ ବ୍ୟବହାର କରିବା ନିମନ୍ତେ ପରାମର୍ଶ ଦେଇଥିଲେ ।

**ଅନ୍ଧମାନଙ୍କ ପାଇଁ ଅକ୍ଷର**

ଲୁଇସବ୍ରେଲ (୧୮୦୯—୧୮୫୨) ଫ୍ରାନ୍ସର ଜଣେ ଅନ୍ଧ ବାଳକ । ପନ୍ଦର ବର୍ଷ ବୟସରେ ସେ ଅନ୍ଧମାନଙ୍କ ପାଇଁ ଅକ୍ଷର ଆବିଷ୍କାର କରିଥିଲେ ।

**ଯେଉଁ ସୈନ୍ୟ ଫେରିଲେ ନାହିଁ**

ମସ୍କୋର କ୍ରେମଲିନଠାରେ ନିଜର ସୈନ୍ୟମାନଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରିବା ସମୟରେ ରୁଷର ଜାର ପ୍ରଥମ ପଲ ଦଳେ ସୈନିକଙ୍କ ଉପରେ ବିରକ୍ତ ହୋଇ ଦେଶର ଶୀତଳତମ ପ୍ରଦେଶ ସାଇବେରିୟାକୁ ଯାତ୍ରା କରିବା ନିମନ୍ତେ ଆଦେଶ ଦେଲେ । ସେମାନେ ସାଇବେରିୟା ଦିଗକୁ ଯାତ୍ରା କଲେ । ତା ପରେ ସେମାନେ ଆଉ ଦେଖାଯାଇ ନାହାନ୍ତି ।

**ସର୍ବାପେକ୍ଷା ଧନୀ ବ୍ୟକ୍ତି**

ମିନେପଲିସର (ଆମେରିକା) ଜିଆନ ପଲ ଗେଟି ପୃଥିବୀରେ ସର୍ବାପେକ୍ଷା ଧନୀ ବ୍ୟକ୍ତି, ସେ ଇଂଲଣ୍ଡର ଗୋଟିଏ ପୁରୁଣା ଅଟ୍ଟାଳିକାରେ ବାସ କରୁଥିଲେ । ତାଙ୍କର ନିଜସ୍ୱ ସମ୍ପତ୍ତିର ମୂଲ୍ୟ ୧, ୩୩୮ ବିଲିୟନ ପାଉଣ୍ଡ । କିନ୍ତୁ ତୈଳ ବିକ୍ରୟ କରି ସେ ଯେଉଁ ଧନ ଉପାର୍ଜନ କରିଥିଲେ ତାର ପରିମାଣ ଏହାଠାରୁ ଯଥେଷ୍ଟ ଅଧିକ ବୋଲି ବିଶ୍ୱାସ କରଯାଏ ।

**ହିରୋସୀମା**

ଦ୍ୱିତୀୟ ମହାଯୁଦ୍ଧ ସମୟରେ ହିରୋସୀମା ଉପରେ ପରମାଣୁ ବୋମା ପଡ଼ିବା ଫଳରେ ୧୦୦,୦୦୦ ଲୋକ ସଙ୍ଗେ ସଙ୍ଗେ ମରିଗଲେ । ୧୩୯୩୭ ଜଣଙ୍କର କୌଣସି ପତା ମିଳିଲା ନାହିଁ । ଅଶେଷ ଯନ୍ତ୍ରଣା ସହ୍ୟକରି ୩୬୪୬୫ ଜଣ କିଛିଦିନ ପରେ ମରିଗଲେ ।

**ଲୋକସଂଖ୍ୟା ଓ ଡାକ୍ତର**

ବିକାଶଶୀଳ ଦେଶଗୁଡ଼ିକର ଜନସଂଖ୍ୟା ପୃଥିବୀ ଜନସଂଖ୍ୟାର ଦ୍ୱି-ତୃତୀୟାଂଶ ହେଲେ ମଧ୍ୟ ଏଠାରେ ଡାକ୍ତରମାନଙ୍କର ସଂଖ୍ୟା ପୃଥିବୀର ମୋଟ ଡାକ୍ତର ସଂଖ୍ୟାର ଏକ-ଚତୁର୍ଥାଂଶ ।

**ପ୍ରଜାପତିର ମୂଲ୍ୟ**

ଅଷ୍ଟ୍ରେଲିୟାସ୍ଥିତ ରାଜ୍ୟ ଭିକ୍ଟୋରିୟାକୁ ଫ୍ରାନ୍‌ସ ଏକ ରହସ୍ୟମୟ କାରଣହେତୁ ହରାଇଲା ଓ ତାହା ବ୍ରିଟିଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଫ୍ରାନ୍‌ସର କ୍ୟାପ୍‌ଟେନ୍ ହାମେଲିନ ଏ ରାଜ୍ୟ ଆବିଷ୍କାର କରିଥିଲେ । ସେ ଗୋଟିଏ ଅଷ୍ଟ୍ରେଲିୟାନ ପ୍ରଜାପତି ଶିକାର କରିବାକୁ ଯାଇ ଅନୁପସ୍ଥିତ ଥିବା ସମୟରେ ଇଂରେଜମାନେ ଏ ରାଜ୍ୟ ଅଧିକାର କରିନେଲେ ।

**ଭାରତରେ ଗ୍ରାମସଂଖ୍ୟା**

୧୯୭୧ ମସିହାର ସେନସସ ଅନୁସାର ଭାରତର ମୋଟ ଗ୍ରାମସଂଖ୍ୟା— ୫,୭୫,୯୩୬ ।

**ବୃହତ୍ତମ କଚ୍ଛପ**

ପୃଥିବୀରେ ଏବେ ବାସକରୁଥିବା କଚ୍ଛପମାନଙ୍କ ମଧ୍ୟରେ ଭାରତ ମହାସାଗର ମଧ୍ୟସ୍ଥିତ ଆଲଡାବ୍ରା ଦ୍ୱୀପରେ ବାସ କରୁଥିବା କଚ୍ଛପ ବୃହତ୍ତମ । ଏହାର ଓଜନ ୫୦୦ ପାଉଣ୍ଡ । ୧୮୪୭ ମସିହାରେ ଏହି ଦ୍ୱୀପରୁ ଧରପାଇଥିବା ଗୋଟିଏ କଚ୍ଛପର ଓଜନ ଥିଲା ୯୦୦ ପାଉଣ୍ଡ ।

**ମଣିଷ ହାଡରେ ଅଳଙ୍କାର**

ତିବ୍‌ବତର ଯାଦୁକରମାନେ ଦାବୀ କରନ୍ତି, ସେମାନେ ପିନ୍ଧିଥିବା ଅଳଙ୍କାରରୁ ଯାଦୁଶକ୍ତି ଆହରଣ କରନ୍ତି । ଏ ଅଳଙ୍କାର ମଣିଷ ହାଡରେ ନିର୍ମିତ ।

**ଦୀର୍ଘତମ ସୁଡଙ୍ଗ ରେଳପଥ**

ଆଲପସ ପର୍ବତମାଳା ତଳେ ସୁଇଜରଲ୍ୟାଣ୍ଡ ଓ ଇଟାଲୀକୁ ସଂଯୁକ୍ତ କରୁଥିବା ସୁଡଙ୍ଗ ରେଳପଥ ପୃଥିବୀରେ ଦୀର୍ଘତମ । ଏହା ୧୯.୮୨ କିଲୋମିଟାର ଦୀର୍ଘ ।

**ହାଇଡ୍ରୋଜେନ ଚାଳିତ ବିମାନ**

ଆମେରିକାର ଲକହେଡ ବିମାନ କମ୍ପାନୀ ଅନୁସାର ହାଇଡ୍ରୋଜେନ ଚାଳିତ ବିମାନ ୧୯୮୭ ମସିହାରୁ ଚଳାଚଳ କରିବ ।

**ଭାରତର ବୃହତ୍ତମ ଜାହାଜ**

'ରାଣୀ ପଦ୍ମିନୀ' ଭାରତରେ ବୃହତ୍ତମ ଜାହାଜ । ଏହାର ଓଜନ ୭୫୦୦୦ ଟନ । ଏହା ୧୯୮୦ ମସିହାରେ ସମୁଦ୍ରଯାତ୍ରା କଲା । ଏ ଜାହାଜର ମୂଲ୍ୟ ୩୦ କୋଟି ଟଙ୍କା ।

**ନ୍ୟୁନତମ ଆବଶ୍ୟକତା**

ଜାତିସଙ୍ଘର ଶିଳ୍ପ ବିକାଶ ବିଭାଗ ପ୍ରକାଶ କରିଛନ୍ତି, ବିକାଶଶୀଳ ଦେଶର

୮୦୦ ନିୟୁତ ବ୍ୟକ୍ତି ଦାରିଦ୍ର୍ୟର ସୀମାରେଖା ତଳେ ବାସକରନ୍ତି ଓ ନ୍ୟୂନତମ ଆବଶ୍ୟକତା ପୂରଣ କରିବା ପାଇଁ ଏମାନଙ୍କୁ ଅର୍ଥ ମିଳେ ନାହିଁ । ପ୍ରାୟ ୧୦୦୦ ନିୟୁତ ବ୍ୟକ୍ତି ମୌଳିକ ଆବଶ୍ୟକତା ଭିତରୁ ପ୍ରାୟ ଗୋଟିଏ ପୂର୍ଣ୍ଣ କରିପାରନ୍ତି ନାହିଁ—ଖାଦ୍ୟ, ପାଣି, ଘର, ଶିକ୍ଷା ବା ଚିକିତ୍ସା ।

**ବେକାର**

ଜାତିସଙ୍ଘର ଏକ ହିସାବରୁ ଜଣାଯାଏ ବିକାଶଶୀଳ ଦେଶଗୁଡ଼ିକରେ ୧୯୮୦ ଜାନୁୟାରୀ ମାସ ପର୍ଯ୍ୟନ୍ତ ପ୍ରାୟ ୧୦୦ ନିୟୁତ ବେକାର ଥିଲେ ।

**ଭାରତରେ ଅପରାଧ**

୧୯୭୮ ମସିହାରେ ଭାରତରେ ୧.୫ ନିୟୁତ ଅପରାଧ ଘଟିଥିଲା । ସେଥିମଧ୍ୟରୁ ୩୦୦,୦୦୦ ଅପରାଧ କେବଳ ଜମିବାଡ଼ ଗଣ୍ଡଗୋଳରୁ ଘଟିଥିଲା । ଏ ଜମିବାଡ଼ ଗଣ୍ଡଗୋଳ ତାମିଲନାଡୁ, ବିହାର ଓ ଉତ୍ତର ପ୍ରଦେଶରେ ସର୍ବାଧିକ ।

**ଗରିବଙ୍କ ସଂଖ୍ୟା**

ଗ୍ରାମରେ ଥିବା ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ଦାରିଦ୍ର୍ୟ ସୀମାରେଖା ତଳେ ବାସ କରନ୍ତି; କିନ୍ତୁ ସହରରେ ପ୍ରତି ୧୪ ଜଣରେ ଜଣେ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ପ୍ରତି ଗ୍ରାମବାସୀ ପ୍ରତିଦିନ ଖାଦ୍ୟରୁ ୨,୨୫୦ କାଲୋରିରୁ କମ ପାଆନ୍ତି । ଏହା ଅଧ କିଲୋ ଧାନ ସହିତ ସମାନ ।

**ବିକଳାଙ୍ଗମାନଙ୍କ ପାଇଁ ସ୍କୁଲ**

ଭାରତରେ ବିକଳାଙ୍ଗମାନଙ୍କ ପାଇଁ ୧୫୦ଟି ସ୍କୁଲ ଓ ଅନୁଷ୍ଠାନ ରହିଛି । ଏହା କେବଳ ୭୫୦୦ ବିକଳାଙ୍ଗଙ୍କୁ କାମ ଯୋଗାଇ ଦେଇପାରିବ । ଭାରତରେ ପାଗଳ-ମାନଙ୍କର ମୋଟ ସଂଖ୍ୟା-ତିନି ନିୟୁତ ।

**ତୁଷାରାଚ୍ଛାଦିତ ପର୍ବତ**

ଭାରତ ଓ ରୁଷର ବୈଜ୍ଞାନିକମାନେ ପରୀକ୍ଷା ନିରୀକ୍ଷା ଦ୍ୱାରା ଜାଣି ପାରିଛନ୍ତି ପୃଥିବୀର କଳେବର ୩୦୦ କିଲୋମିଟାର ଗଭୀରତା ପର୍ଯ୍ୟନ୍ତ ଅଛି । ମଧ୍ୟ ଏସିୟାର କେତେକ ପର୍ବତ ଓ ହିମାଳୟ ସାରବର୍ଷ ତୁଷାର ଦ୍ୱାରା ଆଚ୍ଛାଦିତ ହୋଇ ରହିଥାଏ । ଏହି ତୁଷାର ସ୍ତର ଭିତରର ଉତ୍ତାପ ସର୍ବାଧିକ ।

**ବିଶ୍ୱ ମୋଟର ସାଇକେଲ ଚାମ୍ପିୟନ**

ଇଟାଲୀର ଗିୟାକୋମୋ ଅଗୋଷ୍ଟିନୀ ୧୯୪୯ ମସିହାରୁ ଏ ପର୍ଯ୍ୟନ୍ତ ଯୋଗ ଦେଇଥିବା ମୋଟର ସାଇକେଲ ଦୌଡ଼ ପ୍ରତିଯୋଗିତା ମଧ୍ୟରୁ ମୋଟ ୧୦୮ଟି ଦୌଡ଼

ପ୍ରତିଯୋଗିତାରେ ବିଜୟ ହାସଲ କରିଛନ୍ତି । ୧୯୭୦ ମସିହାରେ ସେ ୧୯ଟି ମୋଟର ସାଇକେଲ ଦୌଡ ପ୍ରତିଯୋଗିତାରେ ବିଜୟ ଲାଭକରି ବିଶ୍ୱରେକର୍ଡ ସ୍ଥାପନ କରିଥିଲେ । ଏ ପର୍ଯ୍ୟନ୍ତ କୌଣସି ମୋଟର ସାଇକେଲ ଚାଳକ ତାଙ୍କ ରେକର୍ଡକୁ ଭାଙ୍ଗିପାରି ନାହାଁନ୍ତି ।

**୨୦୦୦ ଖ୍ରୀଷ୍ଟାବ୍ଦରେ**

ଭାରତର ଲୋକସଂଖ୍ୟା ୬୪୦ ନିୟୁତ । ଏଥି ମଧ୍ୟରୁ ୧୨୦ ନିୟୁତ ଲୋକ ଓ ୩୧୨୧ ନଗରରେ ବାସ କରନ୍ତି । ଭାରତର ମହାନଗରୀମାନଙ୍କ ମଧ୍ୟରୁ ୯ଟି ମହାନଗରୀରେ ଏକ ନିୟୁତରୁ ଅଧିକ ଲୋକ (ପ୍ରତି ମହାନଗରୀରେ) ବାସ କରନ୍ତି । କଲିକତାରେ ୭ ନିୟୁତ, ବମ୍ବେରେ ୬ ନିୟୁତ, ଦିଲ୍ଲୀ ଓ ମାଡ୍ରାସରେ ତିନି ତିନି ନିୟୁତରୁ ଅଧିକ ଲୋକ ବାସ କରନ୍ତି । ୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ଭାରତର ଲୋକସଂଖ୍ୟା ୯୪୫ ନିୟୁତରେ ପହଞ୍ଚିବ । ଏମାନଙ୍କ ମଧ୍ୟରୁ ୩୦ ପ୍ରତିଶତ ସହରରେ ବାସ କରୁଥିବେ । ଏମାନଙ୍କର ସଂଖ୍ୟା ହେବ ୨୮୦ ନିୟୁତ ।

**୪ ନିୟୁତ ହାତ ତନ୍ତ**

ଭାରତରେ ଏବେ ପ୍ରାୟ ୪ରି ନିୟୁତ ହାତ ତନ୍ତ ଚାଲୁଛି । ଏଥିରୁ ଏକ ଶହ ଲକ୍ଷ ଲୋକ ନିଜର ଜୀବିକା ଅର୍ଜନ କରନ୍ତି । ୧୯୭୦-୭୧ ମସିହାରେ ଭାରତର ହାତ ତନ୍ତରୁ ୩୦ କୋଟି ଟଙ୍କା ମୂଲ୍ୟର ଲୁଗା ଉତ୍ପାଦିତ ହୋଇଥିଲା । ୧୯୭୭-୭୮ ମସିହାରେ ଏହା ୨୪୦ କୋଟି ଟଙ୍କାକୁ ବୃଦ୍ଧି ପାଇଛି ।

**ଲୋପ ପାଇଯିବା ଉପରେ**

ଭାରତରେ ପ୍ରାୟ ୪୦ଟି ଜାତିର ସ୍ତନ୍ୟପାୟୀ ପ୍ରାଣୀ, ୧୪ଟି ଜାତିର ପକ୍ଷୀ, ୨ ଜାତିର ସରୀସୃପ ପ୍ରାୟ ଲୋପ ପାଇ ଗଲେଣି କିମ୍ବା ଲୋପ ପାଇଯିବା ପରେ । ଆମେରିକାରେ ପ୍ରାୟ ୧୦୧ ଜାତିର ପ୍ରାଣୀ ଲୋପ ପାଇ ଗଲେଣି । ବର୍ତ୍ତମାନ ଶ୍ରୀ ଲଙ୍କାରେ ୨୫୦୦ ହାତୀ ଅଛନ୍ତି; କିନ୍ତୁ ୨୦ ବର୍ଷ ତଳେ ଏମାନଙ୍କର ସଂଖ୍ୟା ୫୦୦୦ରୁ ଅଧିକ ଥିଲା ।

**୨୦ ନିୟୁତ ଶିଶୁ ପିତୃହୀନ**

ଭାରତର ୨୦ ନିୟୁତ ଶିଶୁ ପିତୃହୀନ । ଭାରତର ଶିଶୁମାନଙ୍କ ମଧ୍ୟରୁ ୨୦ ପ୍ରତିଶତ ଶିଶୁ ଦଶବର୍ଷ ବୟସ ପୂର୍ବରୁ ପିତା କିମ୍ବା ମାତାଙ୍କ ମଧ୍ୟରୁ ଜଣକୁ ହରାଇ ଥାଆନ୍ତି ।

**ପ୍ରଥମ ମୋଟର କାର୍**

ପ୍ରଥମ ମୋଟର କାର୍ ଆମେରିକାରେ ଆବିଷ୍କୃତ କିମ୍ବା ନିର୍ମିତ ହୋଇ ନ ଥିଲା ।

ଆମେରିକାର ଡୁରିଏସ ବା ହେନେରୀ ଫୋର୍ଡ ସର୍ବପ୍ରଥମେ ମୋଟର କାର ଆବିଷ୍କାର ବା ନିର୍ମାଣ କରି ନାହାନ୍ତି । ପ୍ରଥମ ଓ ଦ୍ୱିତୀୟ ମୋଟର କାର ଯଥାକ୍ରମେ ଜର୍ମାନୀର କାର୍ଲବେଞ୍ଜ ଓ ଗୋଟିଏ ବଡେମଲରଙ୍କ ଦ୍ୱାରା ଆବିଷ୍କୃତ ଓ ନିର୍ମିତ ହୋଇଥିଲା । ୧୮୮୫ ଖ୍ରୀଷ୍ଟାବ୍ଦରେ କାର୍ଲବେଞ୍ଜ, ବେଞ୍ଜ ପେଟେଣ୍ଟ ମୋଟର ୱାଗନ ନିର୍ମାଣ କଲେ । ସେହି ବର୍ଷ ଡେମଲର ମଧ୍ୟ ଡେମଲର ଅଟୋମୋବାଇଲ ନିର୍ମାଣ କଲେ । ୧୮୯୪ ଖ୍ରୀଷ୍ଟାବ୍ଦରେ ଆମେରିକାର ଡୁରିଏସ କାର ନିର୍ମାଣ କଲେ । ୧୮୯୩ ଖ୍ରୀଷ୍ଟାବ୍ଦରେ 'ଭେଲୋ' ପ୍ରଥମ ବେଞ୍ଜ ଗାଡ଼ି ବଜାରକୁ ବିକ୍ରୟ ନିମନ୍ତେ ଆସିଲା ।

### କୃଷି ଉତ୍ପାଦନରେ ପଞ୍ଜାବ ଅଗ୍ରଣୀ

ଭାରତର ରାଜ୍ୟମାନଙ୍କର ଆକାର ଅନୁସାର ପଞ୍ଜାବ ପଞ୍ଚଦଶ ସ୍ଥାନରେ ରହିଛି । ଭାରତର ସର୍ବମୋଟ ଭୂମିରୁ ପଞ୍ଜାବ ମାତ୍ର ୨ ୧/୨ ପ୍ରତିଶତ ଅଧିକାର କରି ରହିଛି । କିନ୍ତୁ ପଞ୍ଜାବ ଭାରତର କୃଷିଜାତ ଦ୍ରବ୍ୟର ଚାହିଦାର ୬୦ ପ୍ରତିଶତ ପୂର୍ଣ୍ଣ କରେ । ପଞ୍ଜାବର ପ୍ରତି ହେକ୍ଟର ଭୂମିରେ ୨୪୭୨ କିଲୋଗ୍ରାମ ଗହମ, ୨୫୫୩ କେ.ଜି. ଧାନ ଉତ୍ପାଦିତ ହୁଏ । ଭାରତରେ ପ୍ରତି ହେକ୍ଟର ଭୂମିରେ ହାରାହାରି ୧୪୦୯ କେ.ଜି. ଗହମ ଓ ୧୨୪୬ କେ.ଜି. ଧାନ ଉତ୍ପାଦିତ ହୋଇଥାଏ ।

### ସର୍ବାଧିକ ସାବୁନ ଉତ୍ପାଦନକାରୀ ଦେଶ

ପୃଥିବୀରେ ଭାରତ ସର୍ବାଧିକ ପରିମାଣ ସାବୁନ ଉତ୍ପାଦନ କରେ । ପ୍ରତିବର୍ଷ ଭାରତରେ ଉତ୍ପାଦିତ ହେଉଥିବା ସାବୁନର ପରିମାଣ-୮୫୦,୦୦୦ ଟନ । ପୃଥିବୀର ପ୍ରତ୍ୟେକ ବ୍ୟକ୍ତି ପ୍ରତିବର୍ଷ ସର୍ବନିମ୍ନ ୧.୪ କେ.ଜି ସାବୁନ ବ୍ୟବହାର କରିଥାଆନ୍ତି ।

### ସିନ୍ଧୁ ଉପତ୍ୟକାର ପାଣ୍ଡୁଲିପି

ରୁଷର ବିଶେଷଜ୍ଞମାନେ ଦାବୀ କରନ୍ତି ସିନ୍ଧୁ ଉପତ୍ୟକାରୁ ମିଳିଥିବା ଦ୍ରାବିଡ଼ ଭାଷାର ପାଣ୍ଡୁଲିପି ତାମିଲ, ମାଲୟାଲମ ଓ କାନାଡା ଭାଷା ସହିତ ସମାନ । ସେମାନେ କୁହନ୍ତି ସିନ୍ଧୁ ଉପତ୍ୟକାରୁ ମିଳିଥିବା ପାଣ୍ଡୁଲିପି ବାହାରୁ ଅଣାଯାଇ ନଥିଲା ।

### କର୍ମ ନିଯୁକ୍ତି

ସରକାରୀ କର୍ମଚାରୀଙ୍କ ସଂଖ୍ୟା ଗତ ୩୦ ବର୍ଷ ମଧ୍ୟରେ ୩୦୦ ପ୍ରତିଶତ ବୃଦ୍ଧି ପାଇଛି । ଏଣୁ ବୃଦ୍ଧି ପାଉଥିବା ସରକାରୀ କର୍ମଚାରୀଙ୍କ ପାଇଁ ସରକାର ଜାତୀୟ ଆୟର ୧୬ ପ୍ରତିଶତ ବ୍ୟୟ କରୁଛନ୍ତି । ଚାକିରି ପାଇଥିବା କର୍ମଚାରୀଙ୍କ ମଧ୍ୟରେ ୭୦ ପ୍ରତିଶତ ସରକାରୀ କର୍ମଚାରୀ ।

### ସ୍ୱପ୍ନ ଓ ସ୍ୱର୍ଣ୍ଣ ଲିପି

ମହୀଶୂରର ଟିପୁ ସୁଲତାନ (୧୭୫୩-୧୭୯୯) ଏକ ଆଦେଶ ଜାରୀ କରି

ଥିଲେ, ତାଙ୍କର ସ୍ୱପ୍ନ ମଧ୍ୟ ସରକାରୀ କାର୍ଯ୍ୟ ସହିତ ସମାନ । ଏଣୁ ଦୀର୍ଘ ୧୬ ବର୍ଷ ୫ ମାସ ଧରି ସେ ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ସ୍ୱର୍ଣ୍ଣରେ ଲିପିବଦ୍ଧ କରାଯାଇଥିଲା ।

**ପୃଥିବୀରେ ଜୀବନ**

ଗେଡେସିୟାର କେତେକ ପାହାଡ଼ର ପ୍ରସ୍ତର ପରୀକ୍ଷା ନିରୀକ୍ଷା କରି ବୈଜ୍ଞାନିକମାନେ ଜାଣିପାରିଛନ୍ତି ୨.୬ ବିଲିୟନ ବର୍ଷ ପୂର୍ବେ ପୃଥିବୀରେ ଜୀବନର ସତ୍ତା ଥିଲା ।

**ବିନା ସୁଧରେ ଋଣ**

ୟୁନାଇଟେଡ୍ ଆରବ ଏମିରେଟରେ 'ଇସଲାମିକ ବ୍ୟାଙ୍କ' ନାମରେ ଏକ ବ୍ୟାଙ୍କ ଖୋଲାଯାଇଛି । ପବିତ୍ର କୁରାନର ନିୟମ ଅନୁଯାୟୀ ଏ ବ୍ୟାଙ୍କ ଧାର ଦେଉଥିବା ବ୍ୟକ୍ତିଙ୍କ ଠାରୁ ସୁଧ ନିଅନ୍ତି ନାହିଁ । ଏ ବ୍ୟାଙ୍କର ମୂଳଧନ ୧୨.୫ ନିୟୁତ ଆମେରିକୀୟ ଡଲାର ।

**ଆଦିବାସୀ ଛତା**

ଫ୍ରେଞ୍ଚ ଅଫ୍ରିକାର ଓରସ ଆଦିବାସୀମାନେ ଏକପ୍ରକାର ଆଶ୍ଚର୍ଯ୍ୟଜନକ ଛତା ବ୍ୟବହାର କରୁଥିଲେ । ଏମାନେ ନିଜ ଘରର ଛଣ ନିମିତ୍ତ ଛାତକୁ ଛତାରୂପେ ବ୍ୟବହାର କରୁଥିଲେ ।

**ସମ୍ବାଦ ପରିବେଷଣରେ କମ୍ପ୍ୟୁଟର**

ସମ୍ବାଦ ଏଜେନ୍ସି ଓ ସମ୍ବାଦପତ୍ରମାନେ ଆମ୍ବାଜାଲ ସାଗରର ଏଣ୍ଡୁ ପ୍ରାଇଜର ଦ୍ୱାରା ଆବିଷ୍କୃତ କମ୍ପ୍ୟୁଟର ବ୍ୟବହାର କରି ସମ୍ପାଦନା କାର୍ଯ୍ୟ ତ୍ୱରାନ୍ୱିତ କରି ପାରିବେ । ଏ କମ୍ପ୍ୟୁଟରର ଟେଲିଭିଜନ ସ୍କାନରରେ କମ୍ପ୍ୟୁଟରକୁ ଦିଆଯାଉଥିବା ନୂତନ କଥା ମଧ୍ୟ ସଂଶୋଧିତ ହୋଇଥାଏ ।

**ପୃଥିବୀର ପ୍ରାଚୀନତମ ବୃକ୍ଷ**

ବ୍ରିଷ୍ଟିଲ [କୋନ ପାଇନ ପୃଥିବୀର ପ୍ରାଚୀନତମ ବୃକ୍ଷ । କାଲିଫର୍ଣ୍ଣିୟାର ହ୍ୱାଇଟ ମାଉଣ୍ଟେନରେ ଏ ଗଛ ପ୍ରଚୁର ପରିମାଣରେ ଜନ୍ମିଥାଏ । ଏଥି ମଧ୍ୟରୁ କେତେକ ଗଛର ବୟସ ୪.୬୦୦ ବର୍ଷରୁ ଅଧିକ ।

**ପୃଥିବୀର ବୃହତ୍ତମ ଏୟାର ଲାଇନ**

ସୋଭିଏଟ ୟୁନିୟନର ସରକାରୀ ଏୟାର ଲାଇନ ଏରୋଫ୍ଲୋଟ ପୃଥିବୀର ବୃହତ୍ତମ ବିମାନ ସେବା । ଏଥିରେ ୧୩୦୦ ବିମାନ ୯୦୦,୦୦୦ କିଲୋମିଟରରୁ ଅଧିକ ଯାତ୍ରା କରନ୍ତି । ଏ ବିମାନ ସେବାର କର୍ମଚାରୀ ସଂଖ୍ୟା-୪୦୦,୦୦୦ । ପ୍ରତିବର୍ଷ ଏଥିରେ ୬୬ଟି ଦେଶର ୧୦୦ ନିୟୁତ ଯାତ୍ରୀ ଯାତ୍ରା କରିଥାଆନ୍ତି ।

**ପୃଥିବୀର ବୃହତ୍ତମ ବହି**

ସ୍କଟଲାଣ୍ଡର ଡୁନନରେ ପୃଥିବୀର ବୃହତ୍ତମ ବହି ପ୍ରଦର୍ଶିତ ହୋଇଛି । ଏ ବହିରେ ଥିବା ଗଦ୍ୟ କାହାଣୀର ନାମ 'The little Red Elf' ଉଇଲିୟମ-ଡି-ଉଡ ଏହାର ଲେଖକ । ଏ ବହିର ଉଚ୍ଚ ୭ ଫୁଟ ୨ ଇଞ୍ଚ । ବହି ଖୋଲିଲେ ଏହା ଦଶ ଫୁଟ ଚଉଡ଼ା ହୋଇଥାଏ ।

**ପୃଥିବୀର ଦୀର୍ଘତମ ରେଳ ପୋଲ**

ଆମେରିକାର ଲୁସିୟାନାର ମେଟେରୀସ୍ଥିତ ଲୁଏ-ପି-ଲଙ୍ଗବ୍ରିଜ ପୃଥିବୀର ଦୀର୍ଘତମ ରେଳ ପୋଲ । ୧୯୩୫ ମସିହା ଡିସେମ୍ବର ମାସରେ ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ।

**ଭାରତୀୟମାନଙ୍କର ଖାଦ୍ୟରେ ବ୍ୟୟ**

ଆମେରିକାର ନାଗରିକମାନେ ସେମାନଙ୍କର ଆୟର ୧୬.୮ ପ୍ରତିଶତ ଖାଦ୍ୟରେ ବ୍ୟୟ କରନ୍ତି । ଲାଟିନ ଆମେରିକାର ଲୋକେ ନିଜ ଆୟର ୬୪ ପ୍ରତିଶତ ଓ ଭାରତୀୟମାନେ ନିଜ ଆୟର ୮୪ ପ୍ରତିଶତ ଖାଦ୍ୟରେ ବ୍ୟୟ କରନ୍ତି ।

**୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ଖାଦ୍ୟ ଉତ୍ପାଦନ**

ବର୍ତ୍ତମାନ ଓ ୨୦୦୦ ଶତାବ୍ଦୀ ମଧ୍ୟରେ ଖାଦ୍ୟ ଉତ୍ପାଦନ ବୃଦ୍ଧି କରିବାପାଇଁ ୭୦୦,୦୦୦ ନିୟୁତ ଡଲାର ଖର୍ଚ୍ଚ କରିବାକୁ ହେବ । ଏଥି ମଧ୍ୟରୁ ଅଧିକାଂଶ ବିକାଶଶୀଳ ଦେଶକୁ ଯିବ । ବିକାଶଶୀଳ ଦେଶପାଇଁ ପ୍ରତିବର୍ଷ ୩୨.୦୦୦ ନିୟୁତ ଡଲାର ଆବଶ୍ୟକ । ବର୍ତ୍ତମାନ ପୃଥିବୀରେ ଅସ୍ତ୍ରଶସ୍ତ୍ର ଉତ୍ପାଦନରେ ଖର୍ଚ୍ଚ ହେଉଥିବା ଧନର ଏହା ଏକ ଦଶମାଂଶ ।

**ପୃଥିବୀରେ ଚାଷ ଜମି**

ପୃଥିବୀରେ ବର୍ତ୍ତମାନ ଚାଷ ଜମିର ପରିମାଣ ୧୪୦୦ ନିୟୁତ ହେକ୍ଟର । ଏହା ୬୩୦୦ ନିୟୁତ ହେକ୍ଟରକୁ ବୃଦ୍ଧି କରାଯାଇ ପାରିବ । ଚାଷ ନ ହୋଇଥିବା ଚାଷୋପଯୁକ୍ତ ଅଧିକାଂଶ ଭୂମି ଆଫ୍ରିକା ଓ ଲାଟିନ ଆମେରିକାରେ ଅଛି ।

**ବିଦେଶୀ ଯାତ୍ରୀ ଡାକ୍ତର ଓ ନର୍ସ**

ପୃଥିବୀରେ ଭାରତରୁ ସର୍ବାଧିକ ଡାକ୍ତର ଓ ନର୍ସ ବିଦେଶକୁ ଚାଲି ଯାଇଛନ୍ତି । ଭାରତର ପ୍ରାୟ ୧୫,୦୦୦, ଏମ-ଡି କରିଥିବା ଡାକ୍ତର ବିଦେଶରେ ଅଛନ୍ତି । ଭାରତରେ ଥିବା ମୋଟ ଡାକ୍ତର ସଂଖ୍ୟାର ଏହା ୧୩ ପ୍ରତିଶତ ।

**ମାରାତ୍ମକ ସ୍ନାୟୁ ଗ୍ୟାସ**

ମଣିଷ ବିରୁଦ୍ଧରେ ପ୍ରୟୋଗ କରିବାପାଇଁ ସ୍ନାୟୁ ଗ୍ୟାସ ତିଆରି କରାଯାଇଛି । ଆମେରିକାର ବୈଜ୍ଞାନିକମାନେ ସ୍ନାୟୁ ଗ୍ୟାସ ପ୍ରୟୋଗ କରିବାପାଇଁ ଏକ ସ୍ୱତନ୍ତ୍ର

ପ୍ରକାରର ଗୋଳା ତିଆରି କରିଛନ୍ତି । ଏହା ଏକ ଅଗ୍ନିଶମ କମାଣରୁ ନିକ୍ଷେପ କରାଯିବ । ଦୁଇଟି ଅଣମାରାତ୍ମକ ରସାୟନିକ ତତ୍ତ୍ୱ ଏକ ପରଦା ଦ୍ୱାରା ଏ ଗୋଳା ମଧ୍ୟରେ ପୃଥକ ଭାବରେ ରଖାଯାଇଛି । ଗୋଳା ନିକ୍ଷେପ କରାଗଲେ ବିସ୍ଫୋରଣର ଧକ୍କା ଫଳରେ ଏ ପରଦା ଫାଟିଯିବ ଓ ଏ ଦୁଇଟି ରସାୟନ ମିଳିତ ହୋଇ ମାରାତ୍ମକ ହୋଇଉଠିବ । ଏହା ପ୍ରତିମିନିଟରେ ଏକ କ୍ୟୁବିକ ମିଟାରରେ ୧୦ ମିଲିଗ୍ରାମ ରସାୟନିକ ଛାଡ଼ି ମୃତ୍ୟୁ ତାଣ୍ଡବ ସୃଷ୍ଟି କରିବ ।

### ଟିଭି-ସେଟ୍ ଓ କାଲକୁଲେଟର

ଭାରତରେ ଟେଲିଭିଜନ ଉତ୍ପାଦନ ୧୯୭୮ ମସିହାରେ ୨୭୦,୦୦୦ ଥିଲା । ୧୯୭୯ ମସିହାରେ ଏହା ୩,୧୧,୦୦୦କୁ ବୃଦ୍ଧି ପାଇଥିଲା । ୧୯୭୮ ମସିହାରେ ଭାରତରେ ୧,୫୦,୦୦୦ ଇଲେକଟ୍ରନିକ୍ କାଲକୁଲେଟର ନିର୍ମିତ ହୋଇଥିଲା । ୧୯୭୯ ମସିହାରେ ଏ ସଂଖ୍ୟା ୧,୬୬,୦୦୦କୁ ବୃଦ୍ଧି ପାଇଲା ।

### ମଣିଷ ଓ କୁକୁରର କଙ୍କାଳ

ମଣିଷ ଓ କୁକୁରର କଙ୍କାଳ ପ୍ରାୟ ସମାନ । ଏହା ସ୍ତନ୍ୟପାୟୀ ଜୀବଜଗତର ଏକ ଶ୍ରେଣୀଭୁକ୍ତ । କୁକୁରର ଅଙ୍ଗ ପ୍ରତ୍ୟଙ୍ଗ ଦ୍ରୁତ ଦୌଡ଼ିବାପାଇଁ ଉପଯୋଗୀ । ମାଛର ଗତି ଦ୍ରୁତ କରିବାପାଇଁ ତାର ଡେଣା ସୃଷ୍ଟି ହୋଇଛି । ସାପର ଅଙ୍ଗ ପ୍ରତ୍ୟଙ୍ଗ ନାହିଁ । କିନ୍ତୁ ବହୁ ପଞ୍ଜର ହାଡ଼ ରହିଛି ।

### ଦୋଳାୟମାନ ହିମଖଣ୍ଡ

ପ୍ରାକୃତିକ ନିର୍ଜୀବ ବସ୍ତୁଗୁଡ଼ିକ ମଧ୍ୟରେ କେବଳ ହିମଖଣ୍ଡ ଆପେ ଆପେ ଆଗକୁ ଓ ପଛକୁ ଘୂଞ୍ଚିବାର ଦେଖାଯାଏ ।

### ପେଟ୍ରୋଲଜାତ ଦ୍ରବ୍ୟ

ପେଟ୍ରୋଲିୟମ ଜାତ ପଦାର୍ଥଗୁଡ଼ିକ ମଧ୍ୟରେ ଘଣ୍ଟା ତେଲ ସର୍ବାପେକ୍ଷା ଅଧିକ ମୂଲ୍ୟବାନ । ଆମେରିକାରେ ଏ ତେଲର ଏକ ଗ୍ୟାଲନର ମୂଲ୍ୟ ୮୦୦ ଡଲାର ।

### କାପର କାଏଲ ପକ୍ଷୀ

କାପର କାଏଲ ପକ୍ଷୀକୁ ଶିକାରୀମାନେ ଅନ୍ୟ କୌଣସି ସମୟରେ ଧରି-ପାରନ୍ତି ନାହିଁ । ସେ କେବଳ ସଶବ୍ଦରେ ନିଜର ଖାଦ୍ୟ ଖାଉଥିବା ସମୟରେ ତାକୁ ଧରିବା ସହଜ ।

### ଅଦ୍ଭୁତ ପ୍ରାର୍ଥନା

ହିମାଳୟ ପର୍ବତଶ୍ରେଣୀ ମଧ୍ୟରେ ଥିବା ଦେଶ ଭୁଟାନରେ ବହୁ [illegible]

ପରମ୍ପରା ରହିଛି । ସେଠାରେ ବହୁ ଅଦ୍‌ଭୁତ ଯନ୍ତ୍ରପାତି ମଧ୍ୟ ଦେଖିବାକୁ ମିଳେ । ତିବ୍‌ବତୀୟ ପ୍ରାର୍ଥନା ଚକ୍ରରେ ଗୋଟିଏ ମନ୍ତ୍ର ବନ୍ଧା ହୋଇଥାଏ । ମନ୍ତ୍ର ପ୍ରାର୍ଥନା ଚକ୍ରକୁ ଗୋଟିଏ ଥର ଘୂରାଇଲେ ଗୋଟିଏ ଥର ପ୍ରାର୍ଥନା ଶେଷ ହୁଏ ।

### ଗ୍ରିଟିଙ୍ଗ୍ କାର୍ଡରୂପେ ପତ୍ର

ଭାରତର କେତେକ ସ୍ଥାନରେ 'ସନି' ନାମକ ବୃକ୍ଷର ପତ୍ରକୁ ଗ୍ରିଟିଙ୍ଗ୍ କାର୍ଡରୂପେ ବ୍ୟବହାର କରଯାଏ ।

### ଜାପାନରେ ଅପରାଧୀ ଦଳ

ଜାପାନରେ ଜଣେ ଅପରାଧୀ ଜଣେ ସରକାରୀ କର୍ମଚାରୀଙ୍କର ବାର୍ଷିକ ବେତନର ଚାରିଗୁଣ ଉପାର୍ଜନ କରିଥାଏ । ଏ ପ୍ରକାର ଅପରାଧୀ ଦଳର ସର୍ଦ୍ଦାର ବର୍ଷକୁ ୧୫୦,୦୦୦ ପାଉଣ୍ଡ ଉପାର୍ଜନ କରନ୍ତି । ଜାପାନରେ ଏବେ ୨୫୦୦ ସକ୍ରିୟ ଅପରାଧୀ ଦଳ ଅଛନ୍ତି । ଏଥିରେ ଥିବା ମୋଟ ଅପରାଧୀଙ୍କର ସଂଖ୍ୟା ୧୩୦,୦୦୦ । ଏମାନଙ୍କର ବାର୍ଷିକ ମୋଟ ଆୟ ୫୦୦୦ ନିୟୁତ ପାଉଣ୍ଡ ।

### ଗ୍ରାମ ଓ ନାମ

ଇସ୍ରାଏଲରେ ମାଗଡାଲା ନାମରେ ଛୋଟ ଗ୍ରାମଟିଏ ଅଛି । ଇସ୍ରାଏଲର ପ୍ରାୟ ସାତ ନିୟୁତ ମହିଳା ଏହି ଗ୍ରାମର ନାମ ଧାରଣ କରନ୍ତି—ଯଥା—ମାଗଡ଼ାଲେନ, ମାଡେଲିନ, ମାଡିଲନ ମାରଲିନ ଇତ୍ୟାଦି । କୁହାଯାଏ ଯୀଶୁଖ୍ରୀଷ୍ଟ ଏ ଗ୍ରାମ ଭିତରେ ପଦଯାତ୍ରା କରିଥିଲେ ।

### ଭାରତର ଔଷଧ ବୃକ୍ଷ

ଋଗ୍‌ବେଦ ଯୁଗରେ ଅର୍ଥାତ ଖ୍ରୀଷ୍ଟପୂର୍ବ ୧୫୦୦ରେ ଔଷଧ ଗୁଣଯୁକ୍ତ ଗଛର ପତ୍ର ଓ ଚେର ପ୍ରଭୃତି ରୋଗ ଆରୋଗ୍ୟ କରିବା ନିମନ୍ତେ ବ୍ୟବହୃତ ହେଉଥିଲା । ଭାରତରେ ୧୫୦୦ରୁ ୨୦୦୦ ପ୍ରକାର ଗଛର ଔଷଧୀୟ ଗୁଣ ରହିଛି । ଏ ପର୍ଯ୍ୟନ୍ତ ଏ ପ୍ରକାର ୧୫୦୦ ଗଛ ଚିହ୍ନାଗଲେ ମଧ୍ୟ ସେଥିମଧ୍ୟରୁ କେବଳ ୧୦୦ ପ୍ରକାର ଗଛ ରୋଗ ଚିକିତ୍ସା ନିମନ୍ତେ ବ୍ୟବହୃତ ହେଉଛି ।

### ପ୍ରାଣଦଣ୍ଡ

ପୃଥିବୀର ୧୮ଟି ଦେଶରୁ ପ୍ରାଣଦଣ୍ଡ ଉଠିଗଲାଣି । ଅନ୍ୟ ଆଠଟି ଦେଶ— ଡେନମାର୍କ, ଇଟାଲୀ, ନେଦରଲ୍ୟାଣ୍ଡସ, ନରୱେ ଓ ସୁଇଜରଲ୍ୟାଣ୍ଡ ପ୍ରଭୃତି କେବଳ ଯୁଦ୍ଧକାଳୀନ କେତେକ ଅପରାଧପାଇଁ ପ୍ରାଣଦଣ୍ଡ କାର୍ଯ୍ୟକାରୀ ରଖିଛନ୍ତି । କାନାଡାରେ ଦେଶଦ୍ରୋହ ନିମନ୍ତେ କେବଳ ପ୍ରାଣଦଣ୍ଡ ଦିଆଯାଏ । ସିଚେଲେସ (ଭାରତ ମହାସାଗରୀୟ

ଦ୍ୱୀପପୁଞ୍ଜ) ଓ ନିଉଜିଲ୍ୟାଣ୍ଡରେ କେବଳ ଦେଶର ବିରୋଧରେ ବିପ୍ଳବକାରୀକୁ ପ୍ରାଣଦଣ୍ଡ ଦିଆଯାଏ ।

**ବିଷାକ୍ତ ନଦୀଜଳ**

ଥରେ ଭୟଙ୍କର ବିଷ ହାଇଡ୍ରୋ-ସାୟାନିକ ମିଶ୍ରିତ ଏକ ଟନ ତରଳ ଜାପାନର ନାଇଗ ନଦୀ ଜଳରେ ମିଶିଯାଇଥିଲା । ଏ ବିଷ ୫୦୦,୦୦୦ ବ୍ୟକ୍ତିଙ୍କର ପ୍ରାଣ ବିନାଶ କରିପାରିବ । ଟୋକିଓ ସହରର ଲୋକେ ଏ ନଦୀ ଜଳଦ୍ୱାରା ନିଜର ତିନି-ଚତୁର୍ଥାଂଶ ଜଳର ଆବଶ୍ୟକତା ପୂରଣକରି ଥାଆନ୍ତି । ଗୋଟିଏ କାରଖାନାର ଷ୍ଟୋର ଟ୍ୟାଙ୍କର ହୋସ୍ ଖୋଲିଦିବା ଫଳରେ ଏ ପ୍ରକାର ଦୁର୍ଘଟଣା ଘଟିଥିଲା ।

**ପୃଥିବୀର ସର୍ବାଧିକ କୋକେନ ଜବତ**

ଦକ୍ଷିଣ ଆମେରିକାର କଲମ୍ବିୟାସ୍ଥିତ ବାଗୋଟାର ପୋଲିସ ଥରେ ୬୦୦ କେ.ଜି କୋକେନ ଜବତ କରିଥିଲେ । ଏହାର ମୂଲ୍ୟ ୧୦ ନିୟୁତ ଡଲାରରୁ ଅଧିକ । ଏ ପର୍ଯ୍ୟନ୍ତ ପୃଥିବୀରେ ଏତେ ବିପୁଳ ପରିମାଣ କୋକେନ ଅଉ ଜବତ ହୋଇ-ନାହିଁ ।

**ଅଦ୍ଭୁତ ମାଛ**

ଦକ୍ଷିଣ ଆମେରିକାର ଆମେଜନ ନଦୀରେ ଥ୍ରେଡ୍‌ଫିନ ନାମକ ଏକ-ଜାତୀୟ ମାଛ ବାସକରେ । ପାଣି ଉପରକୁ ଝୁଲିପଡ଼ିଥିବା ପତ୍ର ଉପରେ ଏ ମାଛ ଅଣ୍ଡାଦିଏ ।

**ବିରାଟ ସୂର୍ଯ୍ୟ ଦୀପ**

କାର୍ଡିଫ ବିଶ୍ୱବିଦ୍ୟାଳୟ କଲେଜର ଦଳେ ବୈଜ୍ଞାନିକ ଏକ ୩୦୦୦୦ ପାଉଣ୍ଡ ମୂଲ୍ୟର ବିରାଟ ସୂର୍ଯ୍ୟଦୀପ ନିର୍ମାଣ କରିଛନ୍ତି । ଏହା ପୃଥିବୀର ଯେ କୌଣସି ସ୍ଥାନରେ ସୂର୍ଯ୍ୟ କିରଣକୁ ପ୍ରତିଫଳିତ କରିପାରିବ ।

**ସୋରେକ**

ରୁଷ ଦେଶର ଶବ୍ଦ 'ସୋରେକ'ର ଅର୍ଥ '୪୦' ଏବଂ ଗୋଟିଏ କୁର୍ତା । ପ୍ରାଚୀନ ରୁଷର ଲୋକେ ୪୦ଟି ପଶୁ ଚର୍ମରେ ଗୋଟିଏ କୁର୍ତା ସିଲାଇକରି ପିନ୍ଧୁଥିଲେ ।

**ରକ୍ତଗ୍ରୁପ ଉପରେ ଚୀନର ବହି**

ଚୀନର ୧୨୪୬ ଖ୍ରୀଷ୍ଟାବ୍ଦର ଏକ ପୁସ୍ତକରେ ମାନବ ରକ୍ତଗ୍ରୁପ କଥା ଉଲ୍ଲେଖ କରାଯାଇଛି ; କିନ୍ତୁ ନ୍ୟୁୟର୍କର ରକଫେଲର ଇନଷ୍ଟିଚ୍ୟୁଟରେ ରକ୍ତଗ୍ରୁପର ସ୍ଥିତି କେବଳ ଊନବିଂଶ ଶତାବ୍ଦୀରେ ଜଣାପଡ଼ିଥିଲା ।

### ପୃଥିବୀର ପ୍ରାଚୀନତମ ଜାହାଜ

୧୫୪୫ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ କରୁଥିବା ସମୟରେ ଇଂଲଣ୍ଡର 'ମେରୀରୋଜ' ନାମକ ଏକ ଯୁଦ୍ଧଜାହାଜ ବୁଡ଼ିଯାଇଥିଲା । ଏଥିରେଥିବା ସାତ ଶହ ନାବିକ ଓ ସୈନ୍ୟ ପ୍ରାଣ ହରାଇଥିଲେ । ଏ ଜାହାଜଟିକୁ ଏବେ ପାଣିଭିତରୁ ଉଦ୍ଧାର କରିବା ନିମନ୍ତେ ଚେଷ୍ଟା କରାଯାଉଛି । ଏହା ପୃଥିବୀର ପ୍ରାଚୀନତମ ସମ୍ପୂର୍ଣ୍ଣ ଜାହାଜ । ଏଥିରେଥିବା ସୈନିକମାନେ ଗୋଟିଏ ଗୁଳି ଚଳାଇବା ପୂର୍ବରୁ ଏ ଜାହାଜ ଦକ୍ଷିଣ ଇଂଲିଶ ବନ୍ଦରରେ ବୁଡ଼ିଯାଇଥିଲା ।

### ଯାପଶୂନ୍ୟ ଗ୍ରାମ

ଗୁଜୁରାଟ ରାଜ୍ୟର ଜୁନାଗଡ ଜିଲ୍ଲାର ନରିୟା ଖୋଡ଼ୟାର ନାମକ ଗ୍ରାମର ଲୋକେ ସେମାନଙ୍କର ନୈତିକତାକୁ ସମ୍ପୂର୍ଣ୍ଣ ରକ୍ଷାକରି ଆସିଛନ୍ତି । ଏ ଗ୍ରାମରେ ହୋଟେଲ୍, ବିଡ଼ି କିମ୍ବା ସିଗାରେଟ ଦୋକାନ ନାହିଁ । ଏଠାରେ ମଦ, ଆଇସକ୍ରୀମ କିମ୍ବା ସେ ପ୍ରକାର କୌଣସି ଜିନିଷ ମିଳେ ନାହିଁ ।

### କୁକୁଡ଼ା ଚୁଆର ପର

ଗୋଟିଏ କୁକୁଡା ଚୁଆର ପରର ସଂଖ୍ୟା—୮୦୦୦ ।

### ମୁସଲମାନ ନିର୍ମିତ ଶିବମନ୍ଦିର

ରାଜସ୍ଥାନସ୍ଥିତ ଉଦୟପୁର ଜିଲ୍ଲାର ରେଲମାଗ୍ରା ସହରରେ ହୁସେନ-ଖାଇ ଖେର ନାମକ ଜଣେ ମୁସଲମାନ ୬୦,୦୦୦ ଟଙ୍କା ବ୍ୟୟରେ ଏକ ଶିବମନ୍ଦିର ନିର୍ମାଣ କରାଇଛନ୍ତି । ସେ ରାଜ୍ୟ ବିଦ୍ୟୁତ ବିଭାଗର ଜଣେ ଆସିଷ୍ଟାଣ୍ଟ ଇଂଜିନିୟର । ସେ ନିଜର ସାଙ୍ଗମାନଙ୍କଠାରୁ ଏ ଟଙ୍କା ସଂଗ୍ରହ କରିଥିଲେ ।

### ଉତ୍ତର କାନାଡ଼ା ଓ ୟୁନାଇଟେଡ୍ କିଙ୍ଗଡମ

କର୍ଣ୍ଣାଟକର ଉତ୍ତର କାନାଡ଼ା ଜିଲ୍ଲାର ଆଙ୍କୋଲା ଟାଉନ ମ୍ୟୁନିସିପାଲିଟିର ସେକ୍ରେଟେରୀଙ୍କ ପାଖକୁ ରାଜ୍ୟ ଅର୍ଥ ବିଭାଗ ମନ୍ତ୍ରୀଙ୍କର ପ୍ରାଇଭେଟ ସେକ୍ରେଟେରୀ ଖଣ୍ଡିଏ ପତ୍ର ଲେଖିଥିଲେ । ଏ ପତ୍ର ସିଧା ଇଂଲଣ୍ଡ ଯାତ୍ରାକରି ଦୀର୍ଘ ଦଶମାସ ପରେ ଫେରିଆସିଲା । ପୂର୍ବେ ଉତ୍ତର କାନାଡ଼ାର ନାମ ପୂର୍ବେ 'ନର୍ଥ କାନାର' ଥିଲା । ଏହାର ସଂକ୍ଷିପ୍ତ ନାମ ଇଉ କେ· (ପୋଷ୍ଟାଲ ସର୍କଲରେ), ଲଫାଫା ଉପରେ ଦିଆଯାଇଥିବା ଠିକଣାରେ ଲେଖାଥିଲା—'ଆଙ୍କୋଲା-ଇଉ.କେ ।

### ହାଇଡ୍ରୋଜନ ଚାଳିତ କାର୍

ରୁଷର ଖାରକୋଭସ୍ଥିତ ୟୁକ୍ରେନିୟନ ବିଜ୍ଞାନ ଏକାଡେମୀର ଗୋଟିଏ ବୈଜ୍ଞାନିକ ଦଳ ଏକପ୍ରକାର କାରର ଇଞ୍ଜିନ ନିର୍ମାଣ କରିଛନ୍ତି । ଏଥିରୁ କାର୍ବୋନିକ

ଅକ୍ସାଇଡ ବାହାରିବ ନାହିଁ । ଏଥିରୁ ସ୍ୱଳ୍ପ ପରିମାଣ ନାଇଟ୍ରୋଜନ ଅକ୍ସାଇଡ ବାହାରିବ । ଏଥିରେ କୌଣସି ପୋଡା ଅଂଶ ମଧ୍ୟ ରହିବ ନାହିଁ । ଏହା କେବଳ ଜଳୀୟ ଅଂଶ । ୬୫୦ କିଲୋମିଟାର ଚଳିବାପାଇଁ ଏ କାରରେ କେବଳ ୨.୪୪ କିଲୋଗ୍ରାମ ହାଇଡ୍ରୋଜନ ଆବଶ୍ୟକ ଗ୍ୟାସୋଲିନ ଖର୍ଚ୍ଚ ତୁଳନାରେ ଏହା ବହୁତ କମ ।

**ପଶମ ପୋକ ଓ ସୂତା**

ଗୋଟିଏ ପଶମ ପୋକ ୧୦୦୦ ମିଟର ପଶମ ସୂତା ଉତ୍ପାଦନ କରେ ।

**ଇୟର ରିଙ୍ଗ୍**

କେନିୟାର କେତେକ ଆଦିବାସୀମାନଙ୍କ ମଧ୍ୟରେ କୁମାରୀମାନେ ପ୍ରତିବର୍ଷ ଗୋଟିଏ ଯୋଡ଼ା ନୂଆ ଧରଣର ଇୟର ରିଙ୍ଗ ପିନ୍ଧନ୍ତି ।

**ସାର୍କ ମାଛର ଦାନ୍ତ**

ସାର୍କ ମାଛ ପାଟିରେ ବାର ଧାଡ଼ି ଦାନ୍ତ ଅଛି ।

**ଜାତିସଂଘ ପାଣ୍ଠିକୁ ଅଧିକ ଅର୍ଥ**

ଜାତିସଂଘର ପ୍ରତିବର୍ଷର ବଜେଟର ଏକ-ଚତୁର୍ଥାଂଶ ଅର୍ଥ ଆମେରିକା ଦେଇଥାଏ । ଏହା ବ୍ୟତୀତ ରୁଷ ୧୧.୩୩ ପ୍ରତିଶତ, ଜାପାନ—୮ ୬୬ ପ୍ରତିଶତ, ପଶ୍ଚିମ ଜର୍ମାନୀ ୭.୭୪ ପ୍ରତିଶତ, ଫ୍ରାନ୍ସ, ଚୀନ ଓ ବ୍ରିଟେନ ୫ ପ୍ରତିଶତ କରି ଦିଅନ୍ତି ।

**ଧୂମ୍ରପାନ ବନ୍ଦ ନିମନ୍ତେ ପିଲ**

'ଟାବେକ୍ସ' ନାମକ ପିଲ୍ ଧୂମ୍ରପାନ ଅଭ୍ୟାସ ଛଡାଇବାରେ ସହାୟକ । ସୋଫିୟାର ଦୁଇଟି ଗବେଷଣାଗାର ଏ ପିଲର ଉପଯୋଗ ଦ୍ୱାରା ୬୦ ପ୍ରତିଶତ ଧୂମ୍ରପାୟୀଙ୍କର ଧୂମ୍ରପାନ ଅଭ୍ୟାସ ଛଡାଇ ପାରିଥିଲେ ।

**ଆମ୍ବର ମହତ୍ତ୍ୱ**

ପ୍ରୋଟିନ, ବନଗ୍ଲାଇଷ୍ଟାଲିନ ଓ କାର୍ବୋ-ହାଇଡ୍ରେଟର ମିଶ୍ରଣ ଖାଦ୍ୟ ଦ୍ରବ୍ୟ ଓ ଔଷଧ ତିଆରି କରିବାରେ ବ୍ୟବହୃତ ହୁଏ । ଏହା ଆମ୍ବରୁ ସଂଗୃହୀତ ହୋଇ ପାରୁଛି । ଆମ୍ବରେ ୬୦ରୁ ୨୫ ପ୍ରତିଶତ ଖାଦ୍ୟସାର ଥାଏ ।

**ସର୍ବପ୍ରାଚୀନ ଚଶମା**

ବ୍ରିଟିଶ ମ୍ୟୁଜିୟମରେ ପ୍ରଦର୍ଶିତ ହେଉଥିବା 'ଅଣ୍ଟିଗ୍ଲେୟାର ଗ୍ଲାସେସ' ପୃଥିବୀର ସର୍ବପ୍ରାଚୀନ ଚଶମା । ପୁରାତତ୍ତ୍ୱବିଦମାନେ ଏ ଚଶମା—ଚତୁର୍ଦ୍ଦଶ ଶତାବ୍ଦୀର ଇଜିପ୍ଟର ରଜା ଟୁଟାନ ଖାମେନଙ୍କର କବରରୁ ଉଦ୍ଧାର କରିଥିଲେ ।

### ଶ୍ରମିକମାନଙ୍କ ମଧ୍ୟରେ ମହିଳା

ଶ୍ରମିକମାନଙ୍କ ମଧ୍ୟରେ ମହିଳାମାନଙ୍କର ସଂଖ୍ୟା ହ୍ରାସ ପାଉଛି । ୧୯୧୧ ମସିହାରେ ପ୍ରତି ୧୦୦୦ ପୁରୁଷଙ୍କ ତୁଳନାରେ ମହିଳାମାନଙ୍କର ସଂଖ୍ୟା ଥିଲା—୫୨୫ । ୧୯୫୧ ମସିହାରେ ଏହା ୪୦୮କୁ ହ୍ରାସ ପାଇଲା, କିନ୍ତୁ ଗତ ଦୁଇ ଦଶକ ମଧ୍ୟରେ ଏହା ୨୧୦କୁ ହ୍ରାସ ପାଇଛି ।

### ସୂର୍ଯ୍ୟ ତପ୍ତ ସାଗର ଜଳରୁ ବିଦ୍ୟୁତଶକ୍ତି

ହାୱାଇ ଦ୍ୱୀପର ବୈଜ୍ଞାନିକମାନେ ସୂର୍ଯ୍ୟତପ୍ତ ସମୁଦ୍ର ଜଳରୁ ୫୦,୦୦୦ ୱାଟ ବିଦ୍ୟୁତ ଶକ୍ତି ସଂଗ୍ରହ କରିପାରୁଛନ୍ତି । ଉତ୍ତପ୍ତ ଆମୋନିୟା ଦ୍ୱାରା ଗୋଟିଏ ଟର୍ବାଇନ ଚାଳିତ ଜେନେରେଟର ଏ ବିଦ୍ୟୁତ ଶକ୍ତି ଉତ୍ପାଦନ କରୁଛି । ସୂର୍ଯ୍ୟତପ୍ତ ସାଗର ଜଳକୁ ତାଳେଣିରୂପେ ବ୍ୟବହାର କରି ଆମୋନିୟାକୁ ସଂଚାରିତ ଓ ଘନୀଭୂତ କରାଯାଇ ପାରୁଛି ।

### ଭିକ୍ଷୁକର ସମ୍ପଦ

ଲଣ୍ଡନର ୭୮ ବର୍ଷ ବୟସ୍କ ଭିକ୍ଷୁକ ଉଇଲିୟମ ଲୁଇସ ପ୍ରତିଦିନ ଲଣ୍ଡନର ରାସ୍ତା ଧାରର ଅଳିଆଗଦା ଖୋଜି ବିଭିନ୍ନ ବସ୍ତୁ ସଂଗ୍ରହ କରନ୍ତି । ସେ ମଲାବେଳକୁ ତାଙ୍କ ଭାଇଙ୍କ ପାଇଁ ୩୬ ଲକ୍ଷ ଟଙ୍କା ରଖିଯାଇଥିଲେ ।

### ନିର୍ବାଚନରେ ଖର୍ଚ୍ଚ

୧୯୫୨ ମସିହାରେ ଭାରତର ପ୍ରଥମ ସାଧାରଣ ନିର୍ବାଚନ ହୋଇଥିଲା । ଏ ନିର୍ବାଚନରେ ସରକାରଙ୍କର ବ୍ୟୟ ହୋଇଥିଲା—୧୦.୪୫ କୋଟି ଟଙ୍କା । ଏ ନିର୍ବାଚନ କେବଳ ଲୋକ ସଭା ପାଇଁ ହୋଇଥିଲା । ୧୯୫୭ ମସିହାର ନିର୍ବାଚନରେ ୫.୯୦ କୋଟି ଟଙ୍କା, ୧୯୬୨ ମସିହାରେ ୭.୩୨ କୋଟି ଟଙ୍କା, ୧୯୬୭ ମସିହାରେ ୧୦.୯୫ କୋଟି ଟଙ୍କା, ୧୯୭୧ ମସିହାରେ ୧୧ କୋଟି ଟଙ୍କା ଓ ୧୯୭୭ ମସିହାରେ ଇଲେକ୍ସନରେ ୧୬ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା କିନ୍ତୁ ୧୯୮୦ ମସିହା ଜାନୁୟାରୀ ମାସରେ ଯେଉଁ ନିର୍ବାଚନ ହେଲା ସେଥିରେ ଖର୍ଚ୍ଚ ହେଲା ୫୨.୭୦ କୋଟି ଟଙ୍କା ।

### କନ୍ୟାକୁମାରୀର ବାଲି

ତାମିଲନାଡ଼ୁ ଉପକୂଳରେ ଥିବା କନ୍ୟାକୁମାରୀ ନିକଟରେ ସମୁଦ୍ରର ବେଳାଭୂମିରେ ସାତ ରଙ୍ଗର ବାଲି ମିଳେ; ଯଥା—ଲୋହିତ, ବାଦାମୀ, ପୀତ, ରୌପ୍ୟ ରଙ୍ଗ, ନାରଙ୍ଗୀ, ନୀଳ ଓ ବାଇଗଣୀ । ଏହା ହିନ୍ଦୁମାନଙ୍କର ତୀର୍ଥ ସ୍ଥଳ । ଲୋକ-କଥା ଅନୁଯାୟୀ ଏଠାରେ ଦେବଦେବ ମହାଦେବ ଓ ଦେବୀ କୁମାରୀଙ୍କ ମଧ୍ୟରେ ବିବାହ ହୋଇଥିଲା । ହିନ୍ଦୁ ପରମ୍ପରା ଅନୁଯାୟୀ ଦେବତାମାନେ ଏହି ବିବାହ ସମୟରେ ବର କନ୍ୟାଙ୍କ

ଉପରେ ସାତ ରଙ୍ଗର ତଣ୍ଡୁଳ ବୃଷ୍ଟି କରିଥିଲେ । ସେହିଦିନଠାରୁ ଏଠାରେ ସାତ ରଙ୍ଗର ବାଲି ଦେଖାଯାଏ ।

### ଦୁଇ ହାତରେ ଲେଖା

ଇଟାଲୀସ୍ଥିତ ପାର୍ମାର ଫ୍ରାନ୍‌ସିସକୋ ମେରିୟା ଗାପାଲଡୋ (୧୪୬୪-୧୫୧୫) ବିଶ୍ୱପ୍ରସିଦ୍ଧ କବି । ସେ ଏକ ସମୟରେ ଲାଟିନ ଭାଷାରେ ଦୁଇଟି ପଦ୍ୟ ରଚନା କରିପାରୁଥିଲେ । ସେ ଏକ ସମୟରେ ଦୁଇ ହାତରେ ଦୁଇଟିପାକ କବିତା ଲେଖୁଥିଲେ ।

### କଫି ଓ ସୁଇଡେନ

ଅଷ୍ଟାଦଶ ଶତାବ୍ଦୀରେ ସୁଇଡେନବାସୀ ଚା ଏବଂ କଫି ପାନ କରିବା ଆରମ୍ଭ କଲେ । ଏହା କ୍ଷତିକାରକ, ଏଣୁ ଲୋକେ ପ୍ରଥମେ ଏହାକୁ ପାନ କରିବା ନିମନ୍ତେ ସମ୍ମତ ହେଉ ନଥିଲେ । ସୁଇଡେନ ରାଜା ତୃତୀୟ ଗୁଷ୍ଟାଭ ବୈଜ୍ଞାନିକ ପ୍ରକ୍ରିୟାରେ ଚା ଓ କଫିର କ୍ଷତିକାରକ ଗୁଣ ଜାଣିବା ପାଇଁ ଚେଷ୍ଟା କଲେ । ସେତେବେଳେ ଜେଲରେ ଦୁଇଜଣ ଯମଜ ଭ୍ରାତା ଆଜୀବନ କାରଦଣ୍ଡ ଭୋଗ କରୁଥିଲେ । ଚା ଓ କଫିର ପ୍ରତିକ୍ରିୟା ଜାଣିବା ନିମନ୍ତେ ରାଜା ଗୁଷ୍ଟାଭ ସେ ଦୁଇ ଭାଇଙ୍କୁ ପ୍ରଚୁର ଚା ଏବଂ କଫି ପିଇବାକୁ ଦେଲେ । ଜଣକୁ କଫି ଓ ଅନ୍ୟ ଜଣକୁ ଚା ଦିଆଗଲା । ଏ ଯମଜ ଭ୍ରାତା ବହୁଦିନ ଧରି ବଞ୍ଚି ରହିଲେ । ଚା ପିଉଥିବା ଭାଇ ୮୩ ବର୍ଷ ବୟସରେ ଓ କଫି ପିଉଥିବା ଭାଇ ୮୬ ବର୍ଷରେ ଦେହ ତ୍ୟାଗକଲେ । ଏଣୁ ସୁଇଡେନର ଲୋକେ ବୁଝିଲେ ଚା ଅପେକ୍ଷା କଫି କମ କ୍ଷତିକାରକ ଓ ସେମାନେ କଫି ପିଇବାରେ ଅଭ୍ୟସ୍ତ ହୋଇ ପଡ଼ିଲେ ।

### ପୃଥିବୀର ବୃହତ୍ତମ ଏକ୍‌ସମାସ କାର୍ଡ

ପୃଥିବୀର ବୃହତ୍ତମ ଏକ୍‌ସମାସ କାର୍ଡ ଆମେରିକାରୁ ତେହେରାନରେ ବନ୍ଦୀଥିବା ଆମେରିକୀୟଙ୍କ ନିକଟକୁ ପ୍ରେରଣ କରାଯାଇଥିଲା । ଏହି କାର୍ଡର ଲମ୍ବ ଓ ଚଉଡ଼ା ୬୪ ଫୁଟ x ୧୦ ଫୁଟ । ଓଜନ ୫୦ ପାଉଣ୍ଡ । ୨୨୦୦୦ ଲୋକ ଏ କାର୍ଡରେ ଦସ୍ତଖତ କରିଥିଲେ ।

### ଭାରତୀୟ ଭାଷାରେ ସର୍ବ ବୃହତ ଉପନ୍ୟାସ

ମାଲୟଲମ ଭାଷାର 'ଅଗ୍ନିକାଶିକାଲ' ଉପନ୍ୟାସ ଭାରତୀୟ ଭାଷାରେ ସର୍ବବୃହତ ଉପନ୍ୟାସ । ଏହା ଛବିଖଣ୍ଡରେ ପ୍ରକାଶିତ ହୋଇଛି । ଏ ଉପନ୍ୟାସର ପୃଷ୍ଠା ସଂଖ୍ୟା ୩,୯୫୮ । ଏ ଉପନ୍ୟାସର ମୂଲ୍ୟ ୨୭୦ ଟଙ୍କା ।

### ସର୍ବାଧିକ ବିକ୍ରୟ ହୋଇଥିବା ବହି

'ଦି କମନସେନ୍‌ସ ବୁକ ଅଫ ବେବି ଆଣ୍ଡ ଚାଇଲଡ୍ କେୟାର' ବହି ଡକ୍ଟର ବେଞ୍ଜାମିନ ସ୍ପୋକଙ୍କ ଦ୍ୱାରା ଲିଖିତ । ଏ ବହି ପ୍ରଥମ ୧୯୪୬ ମସିହା ମେ ମାସରେ

ପ୍ରକାଶିତ ହୋଇଥିଲା । ଏ ପର୍ଯ୍ୟନ୍ତ ଏବହିର ୨୫ ନିୟୁତ କପି ବିକ୍ରୟ ହୋଇ ସାରିଲାଣି ।

**ବିଶ୍ୱମାନବର ଅବସ୍ଥା**

ଆଜିକାଲି ପୃଥିବୀର ୪୦୦ କୋଟି ଲୋକ ଆବଶ୍ୟକୀୟ ଖାଦ୍ୟ ପାଆନ୍ତି ନାହିଁ । ୫୦ କୋଟି ବ୍ୟକ୍ତି ଅପୁଷ୍ଟିଜନିତ ରୋଗରେ ପୀଡ଼ିତ, ୧୦୦ କୋଟି ଲୋକ ନିର୍ମଳ ପାନୀୟ ଜଳ ପାଆନ୍ତି ନାହିଁ । ୮୦ କୋଟି ଲୋକ ନିରକ୍ଷର, ୩୫ କୋଟି ଲୋକ ବେକାର କିମ୍ବା ବର୍ଷକୁ ଟ ୪୦୦ରୁ କମ୍ ଉପାର୍ଜନ କରନ୍ତି । ୨୫ କୋଟି ଲୋକ ଅପରିଷ୍କାର ପରିବେଶ ମଧ୍ୟରେ ବାସ କରନ୍ତି ଓ ୧୬୦ କୋଟି ଲୋକ ମୌଳିକ ଚିକିତ୍ସା ଲାଭ କରନ୍ତି ନାହିଁ ।

**ଅଶ୍ଳୀଳ ଶବ୍ଦଭାଷୀ ଶୁଆ**

ଆମେରିକାର ୱାସିଙ୍ଗଟନ ପଶୁଶାଳାରେ ଗୋଟିଏ ଶୁଆ ଦର୍ଶକମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳି ଦେବାକୁ ଆରମ୍ଭ କଲା । ଏ ଶୁଆ କଥା କହିପାରୁଥିବା ଅନ୍ୟ ପକ୍ଷୀମାନଙ୍କ ସାଙ୍ଗରେ ଥିଲା । ଦିନେ ଦୁଇଜଣ ମହିଳା ଶୁଆ ଅଶ୍ଳୀଳ ଶବ୍ଦ ଉଚ୍ଚାରଣ କରୁଥିବାର ଶୁଣିଲେ ଓ ପଶୁଶାଳା ଅଧିକାରୀଙ୍କ ନିକଟରେ ଅଭିଯୋଗ କଲେ । ଅଧିକାରୀ ଶୁଆଟିକୁ ଅନ୍ୟ ପକ୍ଷୀମାନଙ୍କ ସାଙ୍ଗରୁ କାଢ଼ିନେଇ ପୃଥକ ରଖିଦେଲେ । ଏ ଶୁଆ ପ୍ରଥମେ ଦର୍ଶକଙ୍କୁ କୁହେ "ଆପଣ ଭଲ ଅଛନ୍ତି ତ ?" ତା'ପରେ ଅଶ୍ଳୀଳ ଶବ୍ଦ ଉଚ୍ଚାରଣ କରେ ।

**ପକ୍ଷୀ ଓ ବିମାନ**

ଭାରତୀୟ ବିମାନ ବାହିନୀର ବିମାନଗୁଡ଼ିକ ୧୯୭୭ ମସିହା ଜାନୁୟାରୀ ମାସ ଓ ୧୯୭୯ ମସିହା ମେ ମାସ ମଧ୍ୟରେ ଆକାଶରେ ଉଡ଼ୁଥିବା ପକ୍ଷୀମାନଙ୍କ ସହିତ ୨୧୩ ଥର ଧକ୍କା ଖାଇଥିଲା । ଏ ବିମାନଗୁଡ଼ିକୁ ମରାମତି କରିବାରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା । ଉଡ୍ଡୟନ ସମୟରେ ମଧ୍ୟ ବ୍ୟତିକ୍ରମ ଘଟିଲା । ୧୯୭୪ ମସିହାରେ କାନାଡାର ବିମାନଗୁଡ଼ିକ ପକ୍ଷୀମାନଙ୍କ ସହିତ ୩୫୨ ଥର ଓ ସେହି ବର୍ଷ ଆମେରିକାର ବିମାନଗୁଡ଼ିକ ପକ୍ଷୀମାନଙ୍କ ସହିତ ୧୫୦୦ ଥର ଧକ୍କା ଖାଇଥିଲା ।

**ସଂଖ୍ୟା ୩-ଶୁଭ**

ଆମେରିକାର ତୃତୀୟ ରାଷ୍ଟ୍ରପତି ଥମାସ ଜେଫରସନ ପିତାମାତାଙ୍କର ତୃତୀୟ ସନ୍ତାନ । ୩୩ ବର୍ଷ ବୟସରେ ସେ ସ୍ୱାଧୀନତା ଘୋଷଣା ଲେଖିଥିଲେ । ଫ୍ରାନ୍ସରେ ଆମେରିକାର ତୃତୀୟ ରାଷ୍ଟ୍ରଦୂତ ରୂପେ ୩ ବର୍ଷ କାମ କରିଥିଲେ । ତାଙ୍କ ଜୀବନର ତିନିଟି ନୀତି ଥିଲା—ଜୀବନ, ସ୍ୱତନ୍ତ୍ରତା ଓ ସୁଖର ଅନୁସନ୍ଧାନ । ସେ ୩ଟି କଳାକୁ ଭଲ ପାଉଥିଲେ—

ଭାସ୍କର୍ଯ୍ୟ, ଚିତ୍ର ଓ ସଙ୍ଗୀତ । ସେ ୩ଟି ବିଷୟକୁ ଘୃଣା କରୁଥିଲେ—ରାଜତନ୍ତ୍ର, ସାମନ୍ତବାଦ ଓ କଳ୍ପନା ।

**ଚିଠିର ମୂଲ୍ୟ ୫୧୦୦୦ ପାଉଣ୍ଡ**

ଜର୍ଜିଆର ଯେଉଁ ତିନିଜଣ ବ୍ୟକ୍ତି ଆମେରିକାର ସ୍ୱାଧୀନତା ଘୋଷଣାରେ ସ୍ୱାକ୍ଷର କରିଥିଲେ ସେମାନଙ୍କ ମଧ୍ୟରେ ବଟନ ଗୁଇନେଟ ଅନ୍ୟତମ । ସେ ଲେଖିଥିବା ଖଣ୍ଡିଏ ଚିଠି ଆମେରିକାରେ ୧୯୨୭ ମସିହାରେ ୫୧୦୦୦ ପାଉଣ୍ଡ ମୂଲ୍ୟରେ ବିକ୍ରୟ ହୋଇଥିଲା ।

**ପଶୁମଳରୁ ଶକ୍ତି**

ଜାପାନର ବୈଜ୍ଞାନିକମାନେ ଏକ ସ୍ୱତନ୍ତ୍ର ଧରଣର ଗାଡ଼ି ନିର୍ମାଣ କରିଛନ୍ତି । ଏ ଗାଡ଼ି ପଶୁ ମଳରୁ ସଂଗୃହୀତ ଶକ୍ତିଦ୍ୱାରା ଘଣ୍ଟାକୁ ୫୦ କିଲୋମିଟାର ବେଗରେ ଗତି କରୁଛି । ବୈଜ୍ଞାନିକ ପ୍ରକ୍ରିୟାରେ ପଶୁମଳକୁ କାର୍ବନ ମନୋକ୍ସାଇଡରେ ପରିବର୍ତ୍ତିତ କରି ପେନସିଲ ଆକାରର ବ୍ଲକ ତିଆରି କରାଯାଉଛି ।

**ପିନ କୁସନ**

ପ୍ରାଚୀନ କାଳରେ ୟୁରୋପର ବୋହେମିଆ ଅଧିବାସୀମାନେ ପ୍ରତିବର୍ଷ ଦେହରେ ପିନ ଫୋଡ଼ିବା ପ୍ରତିଯୋଗିତାରେ ଯୋଗ ଦେଉଥିଲେ । ସ୍ଥାନୀୟ ଜିପ୍‌ସୀମାନଙ୍କର ରଜା ବାଗୋଙ୍କୁ ୧୯୨୮ ମସିହାରେ ସର୍ବୋତ୍କୃଷ୍ଟ ପିନକୁସନ ରୂପେ ସମ୍ମାନିତ କରାଗଲା । ସେ ନିଜ ହାତରେ ୩୧ ଘଣ୍ଟା ପର୍ଯ୍ୟନ୍ତ ୩୨୦୦ ପିନ ଫୋଡ଼ି ରଖିଥିଲେ ।

**ଫିଲ୍ମରେ ସର୍ବାଧିକ ଖର୍ଚ୍ଚ**

ଲିଓ ଟଲଷ୍ଟୟଙ୍କର 'ୱାର ଆଣ୍ଡ ପିସ୍' ଫିଲ୍ମ ନିର୍ମାଣ କରିବାରେ ୬୭ ନିୟୁତ ପାଉଣ୍ଡ ଖର୍ଚ୍ଚ ହୋଇଥିଲା । ଫିଲ୍ମ ନିର୍ମାଣରେ ଏହା ସର୍ବାଧିକ ଖର୍ଚ୍ଚ । ଏ ଫିଲ୍ମ ଚିତ୍ରିତ ଇଣ୍ଟରଭଲ ସହିତ ୬ ଘଣ୍ଟା ୧୩ ମିନିଟ ଧରି ଚାଲେ । ସୈନିକ ଖେଳ କରିବା ନିମନ୍ତେ ଫିଲ୍ମରେ ୧୨୦,୦୦୦ ଜଣ ବ୍ୟକ୍ତି ଆବଶ୍ୟକ ହୋଇଥିଲେ ।

**୨୦ ଲକ୍ଷ ଦାନ୍ତ**

ରୋମସ୍ଥିତ ଡେଣ୍ଟାଲ ହସପିଟାଲର ଭ୍ରାତର ଗ୍ଲୋଭନି ବଟିଷ୍ଟା ଓସେନିଗୋ ଦନ୍ତ ଚିକିତ୍ସକ ରୂପେ ସେ ଉପାଡ଼ିଥିବା ୨୦ ଲକ୍ଷ ଦାନ୍ତ ସଂଗ୍ରହକରି ରଖିଥିଲେ । ୧୯୦୪ ମସିହାରେ ଏ ଦାନ୍ତ ଭଣ୍ଡାରରେ ୨,୦୦୦,୨୪୪ଟି ଦାନ୍ତ ଥିଲା ।

**ଆୟୁ ବୃଦ୍ଧିକାରୀ ଉଦ୍ଭିଦ**

ରୁଷର ବୈଜ୍ଞାନିକମାନେ, ଚୀନା ଜେନସେଙ୍ଗ ଗଛର ଚେର ସାହାଯ୍ୟରେ

ମୂଷାମାନଙ୍କର ଆୟୁବୃଦ୍ଧି କରିବାପାଇଁ ସମର୍ଥ ହୋଇଛନ୍ତି । ଏ ଗଛର ଆୟୁ ବୃଦ୍ଧିକାରୀ ଗୁଣ ଅଛି । ଧଳା ମୂଷାଙ୍କର ସ୍ୱାଭାବିକ ଆୟୁସୀମା ତିନିବର୍ଷ, କିନ୍ତୁ ଏ ଗଛର ଚେର ସାହାଯ୍ୟରେ ସେମାନଙ୍କର ଆୟୁସୀମା ପାଞ୍ଚ ବର୍ଷକୁ ବୃଦ୍ଧି କରାଯାଇ ପାରିଛି ।

**ପାଠାଗାରରେ ପାଠକ ନାହାନ୍ତି**

ଦିଲ୍ଲୀର ବାହାବଲପୁର ହାଉସରେ ଭାରତୀୟ ଭାଷାରେ ୨୫,୦୦୦ରୁ ଅଧିକ ବହି ରହିଛି । ଏ ଲାଇବ୍ରେରୀ ସରକାରୀ କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହା ସକାଳ ୧୦ ଟାରୁ ଅପରାହ୍ଣ ୫ଟା ପର୍ଯ୍ୟନ୍ତ ଖୋଲାଥାଏ , କିନ୍ତୁ ଏ ସମୟରେ ସରକାରୀ କର୍ମଚାରୀମାନେ ଅଫିସ କାମରେ ବ୍ୟସ୍ତ ଥାଆନ୍ତି ।

**ଧୂମକେତୁର ଲାଞ୍ଜ**

ହାଲେ ଧୂମକେତୁ ୧୯୧୦ ମସିହାରେ ପୃଥିବୀର ନିକଟତମ ହୋଇଥିଲା । ଏହାର ଲାଞ୍ଜର ଲମ୍ବ ୨୯ ନିୟୁତ କିଲୋମିଟାର । ୧୯୮୬ ମସିହାରେ ଏ ଧୂମକେତୁ ପୁଣି ଆକାଶରେ ଦେଖାଯିବ ।

**ଜାତୀୟ ଆୟ ଓ ସରକାରୀ ଖର୍ଚ୍ଚ**

ଆମେରିକା ସରକାର ଜାତୀୟ ଆୟର ୨୯ ପ୍ରତିଶତ ଖର୍ଚ୍ଚ କରୁଥିଲେ । ଏହା ୩୪ ପ୍ରତିଶତକୁ ବୃଦ୍ଧି ପାଇଛି । ବ୍ରିଟେନର ଜାତୀୟ ଆୟରୁ ଖର୍ଚ୍ଚ ୩୪ ପ୍ରତିଶତରୁ ୪୪ ପ୍ରତିଶତକୁ ବୃଦ୍ଧି ପାଇଛି । ଭାରତର ୨୨ ପ୍ରତିଶତ ଜାତୀୟ ଆୟ ସରକାରୀ କାଳର ଖର୍ଚ୍ଚରେ ବ୍ୟୟ କରାଯାଏ ।

**ମନୁଷ୍ୟ ଓ ବାନରର ରକ୍ତ ସଂରଚନା**

ପୃଥିବୀରେ କେବଳ ରେସସ ଜାତୀୟ ବାନରର ରକ୍ତ ସଂରଚନା ମନୁଷ୍ୟ ସହିତ ସମାନ ।

**ଅଳ୍ପ ବୟସରେ ମହାନ ବ୍ୟକ୍ତିଙ୍କର ମୃତ୍ୟୁ**

ଇଜିପଟର ସମ୍ରାଟ ଟୁଟାନ ଖୁମେନ ୧୮ ବର୍ଷ ବୟସରେ, ଫ୍ରାନ୍ସର ବୀରନାରୀ ଅଫ ଆର୍କ ୧୯ ବର୍ଷ ବୟସରେ, ଇଂଲଣ୍ଡର କବି ଜନ କାଟ୍ସ ୨୫ ବର୍ଷ ବୟସରେ, ଇଂଲଣ୍ଡର କବି ସେଲୀ—୨୯ ବର୍ଷ ବୟସରେ, ଆମେରିକାର ଚଳଚିତ୍ର ଅଭିନେତା—ରୁଡଲଫ ଭଲେନଟିକୋ—୩୧ ବର୍ଷ ବୟସରେ, ରୋମର ସମ୍ରାଟ ନୀରୋ ୩୧ ବର୍ଷ ବୟସରେ ପରଲୋକ ଗମନ କରିଥିଲେ ।

**ହାତୀର ଦୀର୍ଘତମ ଦାନ୍ତ**

Hespero loxodon antiquus germanicus' ଜାତୀୟ ହାତୀର ଦୀର୍ଘତମ ଦାନ୍ତ ଥିଲା । ଏ ଜାତୀୟ ହାତୀ ପୃଥିବୀରେ ୨,୦୦୦,୦୦୦ ବର୍ଷ ପୂର୍ବେ ବାସ

କରୁଥିଲା । ଏ ଜାତୀୟ ପୁରୁଷ ହାତୀର ଦାନ୍ତର ଲମ୍ବ ଥିଲା ୧୬ ଫୁଟ 4½ ଇଞ୍ଚ ।

**ନିଗ୍ରୋ ଖେଳାଳିଙ୍କର ମୃତ୍ୟୁ**

ଆମେରିକୀୟ ନିଗ୍ରୋଖେଳାଳି ଜେସିଓୟେନ୍‌ସ ୧୯୩୬ ମସିହାରେ ବର୍ଲିନ୍ ଅଲମ୍ପିକରେ ୪ଟି ସ୍ୱର୍ଣ୍ଣପଦକ ହାସଲ କରିଥିଲେ । କ୍ୟାନସର ରୋଗରେ ତାଙ୍କର ମୃତ୍ୟୁହେଲା ।

**ପୃଥିବୀରେ ଉଚ୍ଚତମ ସ୍ତୂପ**

କର୍ଣ୍ଣାଟକର ସିମୋଗାଠାରୁ ୨୦ କିଲୋମିଟର ଦୂରରେ ବାସବପଟନମର ଗଣବେଦ୍ର ଆଶ୍ରମରେ ଗୋଟିଏ ସ୍ତୁପ ନିର୍ମାଣ କରାଯାଇଛି । ଏ ସ୍ତୁପର ଉଚ୍ଚତା ୧୦୦ ଫୁଟ । ଏହା ପୃଥିବୀର ଉଚ୍ଚତମ ସ୍ତୁପ ।

**ଘୋଡ଼ାଙ୍କ ପାଇଁ ପରିଚୟ ପତ୍ର**

ପୃଥିବୀରେ ଫ୍ରାନ୍‌ସର ନାଗରିକମାନଙ୍କୁ ଅଧିକ ପରିଚୟ ପତ୍ରର ବୋଝ ବହନ କରିବାକୁ ପଡେ । ଏବେ ଫ୍ରାନ୍‌ସର ଘୋଡାମାନଙ୍କ ନିମନ୍ତେ ପରିଚୟପତ୍ରର ବ୍ୟବସ୍ଥା କରାଯାଇଛି । ଏଥିରେ ସେମାନଙ୍କର ଜାତି, ବୟସ, ନାମ, ଲିଙ୍ଗ ଓ ମୂଲ୍ୟ ଲେଖା ରହିବ ।

**ସର୍ବାଧିକ ମାରାତ୍ମକ ପ୍ରାଣୀ**

ସିଡନୀସ୍ଥିତ ମାକ୍ୱାରୀ ବିଶ୍ୱବିଦ୍ୟାଳୟର ରସାୟନବିଦ ମେଲଭିନ ହାଓଡେନ ପ୍ରକାଶ କରିଛନ୍ତି—ଅଷ୍ଟ୍ରେଲିୟାର ସମୁଦ୍ର ତଟରେ ଏକପ୍ରକାର ରଙ୍ଗୀନ ବେଣୀଯୁକ୍ତ ଛୋଟ ଅକ୍ଟୋପସ ଦେଖାଯାଆନ୍ତି । ଏମାନେ ପୃଥିବୀର ସର୍ବାଧିକ ମାରାତ୍ମକ ପ୍ରାଣୀ । ଏ ଅକ୍ଟୋପସର ଲମ୍ବ ୧୦ ସେଣ୍ଟିମିଟର । ଏ ଅକ୍ଟୋପସ ଦେହରେ ଏତେ ଟାକ୍‌ସିନ ଅଛି ଯେ, ଏହା ଦଶଜଣଙ୍କୁ ଏକ ସମୟରେ ମୃତ୍ୟୁ ପୁରକୁ ପଠାଇ ଦେଇ ପାରିବ । ସେ ଏହାର ଆଣ୍ଟିଡୋଟ ତିଆରି କରିବା ପାଇଁ ଅକ୍ଟୋପସ ଟକ୍‌ସିନ ଉପରେ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି । ୧୯୬୯ ମସିହାରେ ଅଷ୍ଟ୍ରେଲିୟାର ଜଣେ ଯୁବକ ସୈନିକ ଏହିଭଳି ଗୋଟିଏ ଅକ୍ଟୋପସ ହାତରେ ଉଠାଇ ନେଲେ । ଅକ୍ଟୋପସଟି ତାଙ୍କୁ କାମୁଡ଼ଦେବାର ଏକ ଘଣ୍ଟା ମଧ୍ୟରେ ତାଙ୍କର ମୃତ୍ୟୁ ହେଲା ।

**ପ୍ରଥମ ହୃଦୟ ପ୍ରତିରୋପଣ**

ପ୍ରଫେସର ଖ୍ରୀଷ୍ଟିୟାନ-ଏନ-ବାନାର୍ଡଙ୍କ ନେତୃତ୍ୱରେ ୨୦ ଜଣ ଡାକ୍ତର ୪୫ ବର୍ଷ

ବୟସ୍କ ଲୁଇସ ୱାସକାନସ୍କୀଙ୍କ ଠାରେ ପ୍ରଥମ ହୃଦୟ ପ୍ରତିରୋପଣ ଅସ୍ତ୍ରୋପଚାର କରିଥିଲେ । ଏହି ହୃଦୟ ପ୍ରତିରୋପଣ ଦକ୍ଷିଣ ଆଫ୍ରିକାସ୍ଥିତ କେପ୍‌ଟାଉନର ଗ୍ରୁଟ ଚିଉର ହସପିଟାଲରେ କରଯାଇଥିଲା । ଏ ପ୍ରତିରୋପଣ ୧୯୬୭ ମସିହା ଡିସେମ୍ବର ମାସ ୩ ତାରିଖରେ କରଯାଇଥିଲା ଓ ଏଥିନିମନ୍ତେ ଦୀର୍ଘ ପାଞ୍ଚଘଣ୍ଟା ସମୟ ଲାଗିଥିଲା । ମିସ ଡେନ୍‌ସି ଆନ ଡାରଭେଲ ନାମ୍ନୀ ଜଣେ ଭଦ୍ରମହିଳା ଏ ହୃଦୟ ଦାନ କରିଥିଲେ । କିନ୍ତୁ ସେହିବର୍ଷ ଡିସେମ୍ବର ୨୧ ତାରିଖରେ ଲୁଇସଙ୍କର ମୃତ୍ୟୁ ହେଲା ।

## ଅଟୋମୋବାଇଲ ଦ୍ୱାରା ମୃତ୍ୟୁ

ଅଟୋମୋବାଇଲ ଆବିଷ୍କୃତ ହେବାଦ୍ୱାରା ତଦଜନିତ ଦୁର୍ଘଟଣାରେ ଏପର୍ଯ୍ୟନ୍ତ ୨୪ ନିୟୁତ ବ୍ୟକ୍ତି ପ୍ରାଣ ହରଇଛନ୍ତି । ଏହି ବିଂଶ ଶତାବ୍ଦୀରେ ଯୁଦ୍ଧରେ ମରିଥିବା ବ୍ୟକ୍ତିଙ୍କର ମୋଟ ସଂଖ୍ୟାଠାରୁ ଅଧିକ ।

## ଜିପ୍‌ସିମାନେ କେଉଁଠାରୁ ଆସିଥିଲେ ?

ୟୁରୋପର ବହୁଦେଶରେ ଜିପ୍‌ସୀ ଦେଖାଯାଆନ୍ତି । ଏମାନେ ଯାଯାବର । ଚତୁର୍ଦ୍ଦଶ ଶତାବ୍ଦୀରେ ଜିପ୍‌ସୀ ପ୍ରଥମେ ୟୁରୋପରେ ଦେଖାଗଲେ । ଜିପ୍‌ସୀମାନେ କେଉଁଠାରୁ ଆସିଲେ ସେ ସମ୍ବନ୍ଧରେ ବିଭିନ୍ନ ପ୍ରକାର ମତ ଶୁଣିବାକୁ ମିଳେ । ଇଂରେଜ ଓ ସ୍ପାନିୟାର୍ଡମାନଙ୍କ ମତରେ ଏମାନେ ଇଜିପ୍‌ଟରୁ ଆସିଥିଲେ । ଏଣୁ 'ଜିପସୀ' ଓ 'ଗିଟାନୋ' ଏ ଦୁଇଟି ଇଜିପ୍‌ଟର ଶବ୍ଦ ଜିପ୍‌ସୀମାନଙ୍କ ପାଇଁ ବ୍ୟବହୃତ ହୁଏ । ଫ୍ରେଞ୍ଚମାନେ ଜିପସୀମାନଙ୍କୁ 'ବୋହେମିଆନ୍‌ସ' କୁହନ୍ତି । କିନ୍ତୁ ଜିପସୀମାନଙ୍କର ଭାଷା ଅଧ୍ୟୟନ କଲେ ଜଣାଯାଏ ସେମାନେ ପ୍ରଥମେ ଭାରତରୁ ଆସିଥିଲେ । ବିଶ୍ୱାସ କରଯାଏ ଅପର ଇଣ୍ଡିଆରେ ଡୋମ୍ବୀ ଏମାନଙ୍କର ପୂର୍ବପୁରୁଷ । ୟୁରୋପରେ ବାସ କରୁଥିବା ଜିପ୍‌ସୀମାନଙ୍କର ଭାଷାରୁ ଜଣାଯାଏ ସେମାନେ ଦୀର୍ଘ ଦିନଧରି ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ବାସ କରିଥିଲେ ।

## ଲୋକେ ମୂର୍ଚ୍ଛା ହୋଇ ଯାଆନ୍ତି କାହିଁକି ?

ମସ୍ତିଷ୍କକୁ ରକ୍ତ ଯୋଗାଣ କମିଗଲେ ହୃଦଯନ୍ତ୍ର କିଛି ସମୟ ପାଇଁ ଦୁର୍ବଳ ହୋଇଯାଏ । ଏହି କାରଣରୁ ଲୋକେ ମୂର୍ଚ୍ଛାହୋଇ ଯାଆନ୍ତି, ଇଚ୍ଛା ଭାବ ପ୍ରବଣତା, ଅସହ୍ୟ ଯନ୍ତ୍ରଣା, ଉଷ୍ଣ ଜଳରେ ସ୍ନାନ କରୁଥିବା ସମୟରେ ମାଂସପେଶୀର ନମନୀୟତା ମାଦକଦ୍ରବ୍ୟ ସେବନ, ଅତ୍ୟଧିକ ଧୂମ୍ରପାନ ଓ ରକ୍ତ, ଶାରୀରିକ ଦୁର୍ବଳତା ଏହାର କାରଣ । ରକ୍ତହୀନତା ଭୋଗୁଥିବା ରୋଗୀ ବାରମ୍ବାର ମୂର୍ଚ୍ଛା ହୋଇପିବାର ଦେଖାଯାଏ ।

### ନଅ ଲକ୍ଷ ଚିଠି

ବିଖ୍ୟାତ ବେସ୍ ବଲ ଖେଳାଳି ହେନେରୀ ଆରନ ୧୯୭୪ ମସିହାରେ ୯୦୦, ୦୦୦ ଚିଠି ପାଇଥିଲେ । ସେ ବର୍ଷ ଅନ୍ୟ କୌଣସି ବେସରକାରୀ ନାଗରିକ ଏତେସଂଖ୍ୟକ ଚିଠି ପାଇ ନଥିଲେ ।

### ଉଚ୍ଚତମ କିର୍ତ୍ତୀସ୍ତମ୍ଭ

ଆମେରିକାସ୍ଥିତ ମିସୋରୀର ସେଣ୍ଟଲୁଇସ ସହରରେ ଥିବା ଷ୍ଟେନଲେସ ଷ୍ଟିଲ ନିର୍ମିତ ଆର୍ଚ୍ଚର ଉଚ୍ଚ । ୬୩୦ ଫୁଟ । ଏହା ପୃଥିବୀର ଉଚ୍ଚତମ ଆର୍ଚ୍ଚ । ୧୮୦୩ ଖ୍ରୀଷ୍ଟାବ୍ଦରେ ଆମେରିକା ଲୁସିଆନା କିଣିବାପରେ ପଶ୍ଚିମକୁ କାର୍ଯ୍ୟ ବିସ୍ତାର କଲା । ଏହି ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏ ଆର୍ଚ୍ଚଟି ନିର୍ମିତ ହୋଇଥିଲା ।

### ଚ୍ୟୁଇଙ୍ଗଗମ

ଚିକ୍‌ଲେ (chi‹ kle) ନାମକ ପଦାର୍ଥଦ୍ୱାରା ଚ୍ୟୁଇଙ୍ଗଗମ୍ ନିର୍ମିତ । ଚିକଲ, ଚିକୋ ନାମକ ଗଛରୁ ସଂଗ୍ରହ କରଯାଏ ।

### ସୁଟ୍‌କେସ କିଡନା

ନ୍ୟୁୟର୍କସ୍ଥିତ ରେନାଲେ ଡ୍ରଜିକ ସେକ୍‌ସନର ଡାଇରେକ୍ଟର ଏଲି-ଫ୍ରେଡ୍‌ମ୍ୟାନ ସୁଟକେସ୍ କିଡନୀ ଆବିଷ୍କାର କରିଥିଲେ ।

### ରସାୟନିକ ସାର

ଆମେରିକାର ବେଞ୍ଜାମିନ ଫ୍ରାଙ୍କ୍ଲିନ ରସାୟନିକ ସାର ଆବିଷ୍କାର କରିଥିଲେ ।

### ଏକାଦିକ୍ରମେ ପାଞ୍ଚଥର ଟସ୍‌ଜିତିବା

କ୍ରିକେଟ କ୍ଷେତ୍ରରେ ଏଫ୍-ଏସ-ଜ୍ୟାକସନ ପାଞ୍ଚଟିଯାକ ଟେଷ୍ଟମ୍ୟାଚରେ ପାଞ୍ଚଥରଯାକ ଟସ ଜିଣିଥିଲେ । ୧୯୦୫ ମସିହାରେ ଅଷ୍ଟ୍ରେଲିୟା ବିରୁଦ୍ଧରେ ସେ ଇଂଲଣ୍ଡ ଦଳରେ ନେତୃତ୍ୱ ନେଇଥିଲେ ।

### ଲାଭର ଉପାଦେୟତା

ଆଗ୍ନେୟଗିରିରୁ ବାହାରୁଥିବା ଲାଭା । ପ୍ୟୁମିସ ନାମକ ପଦାର୍ଥରେ ପରିଣତ ହୁଏ । ଏହା ଚକଲେଟ ଆସେସରି ରୂପେ ପାଲିସ କରିବାରେ ବ୍ୟବହୃତ ହୁଏ ।

**ଲେଟ-ଲତିଫ ସ୍ୱପ୍ନ**

ରୋମର ଅଇସେଲସେକ୍ରା ଉପନଗରରେ ରହୁଥିବା ଡୋମେନିକୋରେଣୀଙ୍କର ପ୍ରାଣ ବଞ୍ଚାଇବା ନିମନ୍ତେ ତାଙ୍କ ପୁଅକୁ ସ୍ୱପ୍ନରେ ମିଳିଥିବା ଚେତାବନୀ କିଛି ବିଳମ୍ବରେ ମିଳିଲା ଏଣୁ ତାଙ୍କର ପ୍ରାଣରକ୍ଷା କରଯାଇ ପାରିଲା ନାହିଁ ।

ରେଣୀଙ୍କର ତିରିଶ ବର୍ଷୀୟ ପୁତ୍ର ଅନ୍ତୋନିୟା ଏପ୍ରିଲ ମାସର ଗୋଟିଏ ସକାଳେ ଯେତେବେଳେ ନିଦରୁ ଉଠିଲେ, କିଛି ସମୟ ପୂର୍ବରୁ ସେ ଦେଖିଥିବା ସ୍ୱପ୍ନ ତାଙ୍କ ମନରେ ସ୍ପଷ୍ଟ ଥିଲା । ସେ ସ୍ୱପ୍ନରେ ଦେଖିଲେ ତାଙ୍କ ଘର ପାଖରେ ଥିବା ନାଳ ଧାରରେ ଥିବା ପଙ୍କରେ ତାଙ୍କର ପିତା ବୁଡ଼ ଯାଉଛନ୍ତି । ଅଜ୍ଞାତ ଭୟ ଆଶଙ୍କାରେ ଅନ୍ତୋନିୟା ହଠାତ ପୋଷାକ ପିନ୍ଧି ପିତାଙ୍କୁ ଖୋଜିବାପାଇଁ ନାଳ କୂଳକୁ ଚାଲିଗଲେ । କିଛିଦୂର ଗଲା ପରେ ଭିୟାକୋନି ଜଗନା ନାମକ ସ୍ଥାନରେ ସେ ନିଜ ପିତାଙ୍କର ମୋଟର ସାଇକେଲ ଦେଖିଲେ । ମୋଟର ସାଇକେଲର ଅର୍ଦ୍ଧାଂଶ ପଙ୍କ ଭିତରେ ବୁଡ଼ ରହିଥିଲା । ଅନ୍ତୋନିୟା ସଙ୍ଗେ ସଙ୍ଗେ ପୋଲିସକୁ ଖବର ଦେଲେ; କିନ୍ତୁ ପୋଲିସ ପହଞ୍ଚିଲା ବେଳକୁ ରେଣୀ ସମ୍ପୂର୍ଣ୍ଣ ପଙ୍କ ଭିତରେ ବୁଡ଼ ଯାଇଥିଲେ । ପୋଲିସ ଖୋଜାଖୋଜି କରି ତାଙ୍କର ଶବ ଉଦ୍ଧାର କଲେ ।

**ଭଡ଼ାରେ ଚୋର**

ଏବେ ନ୍ୟୁୟର୍କର ଏକ ଇଲେକ୍ଟ୍ରନିକ ଫାର୍ମର ମାଲିକ ଫାର୍ମର ସମସ୍ତ କର୍ମଚାରୀମାନଙ୍କୁ ଏକ ସାଙ୍ଗରେ ଡକାଇଲେ ଓ କହିଲେ—ଚୋରୀ ହେତୁ ଫାର୍ମର ବହୁତ କ୍ଷତି ହେଉଛି । ଏହାପରେ ସେ ସମ୍ମୁଖ ଧାଡ଼ିରେ ବସିଥିବା ଜଣେ ବ୍ୟକ୍ତିଙ୍କର ପକେଟ ତଲାସି ନେବାକୁ କହିଲେ । ପ୍ରଥମେ ତ ସେ ବ୍ୟକ୍ତି ଘୋର ପ୍ରତିବାଦ କଲେ; କିନ୍ତୁ ପୋଲିସ ଡକାଇବାର ଧମକ ଦେବାରୁ ସେ ରାଜି ହୋଇଗଲେ । ତଲାସି ନେବାରୁ ତାଙ୍କ ପକେଟରୁ ଗୋଟିଏ ଇଲେକଟ୍ରନିକ କାଲକୁଲେଟର ବାହାରିଲା । ସେ ଫାର୍ମରୁ ସେଇଟିକୁ ଚୋରୀକରିଛନ୍ତି ବୋଲି ମାନିଗଲେ । ମାଲିକ ତାଙ୍କୁ ଚାକିରିରୁ ବାହାର କରିଦେଲେ ବୋଲି ଘୋଷଣାକଲେ ଓ କହିଲେ - "ଏଥର ତୁମକୁ ଛାଡ଼ିଦେଲି, କିନ୍ତୁ ପୁଣି ଚୋରୀକଲେ ସିଧା ପୋଲିସରେ ଦେବି ।"

ସବୁ କର୍ମଚାରୀ ଚାଲିଗଲାପରେ ମାଲିକ ସେ ଚୋରଙ୍କୁ ନିଜର ଭୂମିକା ଚମତ୍କାର ଭାବରେ ନିର୍ବାହ କରିଥିବାରୁ ଧନ୍ୟବାଦଦେଲେ । ଚୋର ଫାର୍ମର କର୍ମଚାରୀ ନୁହେଁ ଏହା ଅନ୍ୟ କର୍ମଚାରୀମାନେ ଜାଣିପାରିଲେ ନାହିଁ । ମାଲିକ ତାଙ୍କୁ ଏପରି ଏକ ସଂସ୍ଥାରୁ ଡକାଇଥିଲେ ଯେଉଁ ସଂସ୍ଥା ଏ କାମ ନିମନ୍ତେ ଭଡ଼ାନେଇ ଚୋର ପଠାନ୍ତି । ମାଲିକ ତାଙ୍କର ସହାୟତାରେ ନିଜର କର୍ମଚାରୀମାନଙ୍କୁ ଧମକଦେଲେ । ଏହାଫଳରେ ଫାର୍ମରେ ହେଉଥିବା ଛୋଟ ଛୋଟ ଚୋରୀ ବନ୍ଦ ହୋଇଗଲା ।